# ନିଷଧେଶ୍ୱର



ପ୍ରଣେତା ଓ ପ୍ରକାଶକ:

**ଶ୍ରୀ ଅଭିମନ୍ୟୁ ପଟ୍ଟନାୟକ**

ଅବସରପ୍ରାପ୍ତ ଡେପ୍ୟୁଟି କଲେକ୍ଟର,

ରସୁଲକୋଣ୍ଡା

---

ମୁଦ୍ରାକର—ଶ୍ରୀ ହାଡ଼ୁ ସମ୍ପଗୁରୁ

**ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍**

ବ୍ରହ୍ମପୁର (ଗଞ୍ଜାମ)

୧୯୪୧

ମୂଲ୍ୟ ଟ ୦-୧୦-୦

ଓଁ ଶ୍ରୀଗଣେଶାୟନମଃ

## ମନ୍ତବ୍ୟ

ଆଜିକାଲି ଉତ୍କଳରେ ଯେତେ ପୁସ୍ତକ ପ୍ରକାଶିତ ହେଉ ଅଛି, ତନ୍ମଧ୍ୟରୁ ଶତକଡ଼ା ଦଶଖଣ୍ଡ ମୂଲ୍ୟହୀନ ପୁସ୍ତକ କହିଲେ ଚଳେ । ଭାଷା ଏବଂ ଭାବ ପ୍ରତି ଦୃଷ୍ଟି ନଦେଇ ଯଥାକାର ବହି ଲେଖି ନଛପାଇ ଛ ପାହ୍ଯା ଦେଇ ଛପାଇଦେଇ ଯଦା ଯା ସ୍ଥିତି କାଳୁ ନମାନ ପ୍ରଚାର କରିବା ଦ୍ୱାରା ଉତ୍କଳସାହିତ୍ୟାକାଶରେ ନିଷ୍ପ୍ରଭ ନକ୍ଷତ୍ର ସଂଖ୍ୟା ବୃଦ୍ଧି କରାଯାଉଅଛି ବୋଲି ମୋର ବିଶ୍ୱାସ । 'ନୈଷଧେଶ୍ୱର କାବ୍ୟ' ଏ ଭଳି ପୁସ୍ତକମାନଙ୍କ ଠାରୁ ସଂପୂର୍ଣ୍ଣ ପୃଥକ । ଏହି ପୂତ କାବ୍ୟଟି ସୁବିବେକବାନ୍ କବିଙ୍କ ମୁଖରୁ ଅବିକଳ ଭାବେ ଶୁଣିବା ସୁବିଧା ଲଭିଥିଲି । କାବ୍ୟର ପ୍ରତି ସର୍ଗ, ଭାବ, ଅଳଙ୍କାର ଓ ଶବ୍ଦ ବିନ୍ୟାସ ଛଟାରେ ମଣ୍ଡିତ ହୋଇଅଛି । କବି ଅନେକ ଗୁଡ଼ିଏ ପୁସ୍ତକରତ୍ନ ଉତ୍କଳ ସାହିତ୍ୟ କୋଷାଗାରକୁ ପ୍ରଦାନ କରିଥିଲେହେଁ 'ନୈଷଧେଶ୍ୱର କାବ୍ୟ' ଉକ୍ତ ଭଣ୍ଡାରରେ ମହୋଜ୍ଜ୍ୱଳ ପୁସ୍ତକ ରତ୍ନ ରୂପେ ବିରାଜିବ, ଏଥିରେ ଦ୍ୱିରୁକ୍ତି ନାହିଁ । ନୀତି ଅଛି, 'କୀର୍ତ୍ତିରକ୍ଷରସଂବନ୍ଧାସ୍ଥିରା-ଭବତିଭୂତଳେ' ମାତ୍ର କବି କବି ଉପାଧି ଲାଳସୀ ହୋଇ ପୁସ୍ତକମାନ ଲେଖି ନାହାନ୍ତି । ତାଙ୍କ ହୃଦୟର ଐଶୀ ଶକ୍ତି ବାଣୀଠାକୁରାଣୀଙ୍କ ପଦକୀର୍ତ୍ତନକାର୍ଯ୍ୟରେ ପାଣିକି ନିଯୋଜିତ କରାଇ, ସୁନ୍ଦର ସୁନ୍ଦର ଭାବ ଆଣି ଭାଷା ଆଣି ବୃଦ୍ଧି କରାଇ ଅଛନ୍ତି । ଆଉ ଗୋଟିଏ ବିଶେଷତ୍ୱ ଏହିକି, ତଟିନୀଶ୍ୱର-ସୁର-ଧ୍ୱନିର ନୀରବ ସ୍ୱଚ୍ଛ ଓ ସୁଧା ଆଣି ହାଣିବା ଭାବପୂର୍ଣ୍ଣ । ନାୟିକ

ନାୟିକାଙ୍କ ଚରିତ୍ର ଚର୍ଚ୍ଚିତ କାବ୍ୟ କାଞ୍ଚନରେ ଅମୂଲ୍ୟ ମୀତ-ରତ୍ନାବଳୀ ଭଳି ସଂଯୁକ୍ତ କରିଥିବାରୁ, ଉତ୍କଳ ସାହିତ୍ୟାନ୍ତରୀକ୍ଷରେ ପୁସ୍ତକଟି ସମୁଜ୍ଜ୍ୱଳ ନକ୍ଷତ୍ର ରୂପେ ଶୋଭୁଥିବ । ପ୍ରକାଶ ଥାଉକି ଶୌଚପଦୀ ସୌଖ୍ୟ ମିଳନବତ୍ ପୁସ୍ତକରେ ପ୍ରାଚୀନ ଓ ଅଧୁନିକ ବର୍ଣ୍ଣନାଗୁଡ଼ିକ ଅବିରୋଧ ଭାବେ ରହିଥିବାରୁ ପାଠକବୃନ୍ଦଙ୍କ ପରମାହ୍ଲାଦକର ହେବ, ସନ୍ଦେହ ନାହିଁ । ଇତି ।

ପୁଃ ଗ୍ରାମ—ଧରାକୋଟ
ଶ୍ରୀ ରାମଚନ୍ଦ୍ର ଦେବ
ମହାରାଜାଙ୍କ ଅ ୧୮ ଙ୍କ
ବୃଷ ଦ ୩ ନ

ଶ୍ରୀ ଶ୍ୟାମସୁନ୍ଦର ଦାସ ଗୋସ୍ୱାମୀ
ପଦ୍ୟାଳଙ୍କାର,
ସମ୍ପାଦକ,
'ବିନାୟକ ପାଠାଗାର'



## ଅଭିମତ

ମହାଭାରତୀୟ ଉପାଖ୍ୟାନ ନଳ ଚରିତକୁ ଅଧୁନିକ କାବ୍ୟ ଆକାରରେ ରୂପ ଦେଇ 'ନୈଷଧେଶ୍ୱର' ନାମିତ କ୍ଷୁଦ୍ର କାବ୍ୟ ଖଣ୍ଡି ଲେଖା ଯାଇଛି । ବୃଦ୍ଧକବି ଶ୍ରୀଯୁକ୍ତ ପଟ୍ଟନାୟକ ମହାଶୟ ତାଙ୍କ ଲିଖିତ ଅନ୍ୟାନ୍ୟ ଲେଖା ଠାରୁ ଏହି ବହିଟିରେ ଏତିକି ମାତ୍ର ବିଶେଷତା ରଖିପାରିଛନ୍ତି । ଲେଖକ କବି ହୃଦୟ ଅଥଚ ସିଦ୍ଧହସ୍ତ ଥିବାର ଆମ୍ଭେ ତାହାଙ୍କ ଲିଖିତ 'ବାଳବିନୋଦ' ଓ 'ଋତୁସଂହାର' ପ୍ରଭୃତି ଲେଖାରୁ ଅନୁଭବ କରିପାରିଛୁ । ଶଂସିତ ବହିଟିରେ ଏସବୁ ସବୁ କେତେକ ନୂତନତା ଆମ୍ଭେ ଦେଖିବାକୁ ପାଉଁ । ଅଳଙ୍କାର ସଂଯୋଗ ଏପରି ନୂତନ ଓ ଚମତ୍କାର ଯେ, ବାସ୍ତବିକ ତାହା ସାହିତ୍ୟିକ ସମାଜର ସମାଦରଣୀୟ ଅଟେ ।

ଏବଂ ତାହା ପଢ଼ିବା ମାତ୍ରେ ମନେ ହୁଏ, ଉତ୍କଳ ସାହିତ୍ୟ ନିଜର ପରିପୁଷ୍ଟି ଲାଗି ଲେଖକଙ୍କ ଠାରୁ ଅନେକ ଆଶା କରନ୍ତୁ । ପୌରାଣିକ ଆଖ୍ୟାନକୁ ସାହିତ୍ୟ ଓ ଆଧ୍ୟାତ୍ମିକ ମତବାଦର ସୁଦୃଢ଼ ପତ୍ତନ ଉପରେ ଠିଆ କରାଇବାରେ କବିଙ୍କର ନୈପୁଣ୍ୟ ଅନନ୍ୟ ସାଧାରଣ ଅଟେ । ଲେଖକ ଜଣେ ଅବସରପ୍ରାପ୍ତ ଡେପୁଟିକଲେକ୍ଟର । ଦାୟିତ୍ୱପୂର୍ଣ୍ଣ କର୍ମକ୍ଷେତ୍ରରୁ ଅବସର ନେଇ ଚତୁର୍ଥ ଜୀବନରେ ସାହିତ୍ୟ କ୍ଷେତ୍ରରେ ସାହସ ଧରି ଅବତୀର୍ଣ୍ଣ ହେବା କ୍ୱଚିତ୍ ଦେଖାଯାଏ । ଅଥଚ ସେହି କ୍ଷେତ୍ରରେ ପାଣ୍ଡିତ୍ୟ ଦର୍ଶାଇ ପାରିବା ତା'ଠାରୁ ବଳି କଠିନ, ଏହା ଅବିସମ୍ବାଦିତ ସତ୍ୟ । ଏସବୁ ଦୃଷ୍ଟିରେ ଆଶା କରାଯାଏ. କବିଙ୍କର ଲେଖାଗୁଡ଼ିକ ଉତ୍କଳ ଭାରତୀଙ୍କର ପୂଜା ପୀଠରେ ଗୋଟିଏ ସୁନ୍ଦର ଉପଚାରର ସ୍ଥାନ ଅଧିକାରକରିବ । ଇତି ।

ଧରାକୋଟ, ତା ୧୧-୫-୧୯୪୧

ଶ୍ରୀ ହରିହର ମିଶ୍ର କାବ୍ୟତୀର୍ଥ
ଓଡ଼ିଶା ସଂସ୍କୃତ ପରିଷତ୍ ସଭ୍ୟ



## ଅଭିମତ

ପରଗୁଣ ପରମାଣୂନ୍ ପର୍ବତୀକୃତ୍ୟନିତ୍ୟଂ
ନିଜହୃଦି ବିକସନ୍ତଃ ସନ୍ତି ସନ୍ତଃ କିୟନ୍ତଃ

ଶ୍ରୀଯୁକ୍ତ ଅଭିମନ୍ୟୁ ପଟ୍ଟନାୟକଙ୍କ ବିରଚିତ ନିଷଧେଶ୍ୱର କାବ୍ୟର ପାଣ୍ଡୁଲିପି ପ୍ରାରମ୍ଭରୁ ଅଷ୍ଟମ ସର୍ଗ ପର୍ଯ୍ୟନ୍ତ, ସପ୍ତଦଶ ଓ ଅଷ୍ଟାଦଶ ସର୍ଗମାନଙ୍କରୁ କିୟଦଂଶ ମୁଁ ଶ୍ରବଣ କରି ସବିଶେଷ

ତୃପ୍ତି ଲାଭ କରିଅଛି । ନିଷଧେଶ୍ୱରଙ୍କ ଚରିତ ବୁଝାଉ ଥିବାରୁ କାବ୍ୟଟିର ନାମ ନିଷଧେଶ୍ୱର ପରିବର୍ତ୍ତନରେ ନୈଷଧେଶ୍ୱର ରହିବା ବାଞ୍ଛନୀୟ ମନେ କଲି । ଏହି କାବ୍ୟ ରଚନାରେ ରଚୟିତା କୌଣସି ସନ୍ଦର୍ଭର ଛାୟାକୁ ଅଶ୍ରୟ କରି ନାହାନ୍ତି । ଏହାର ଭାଷା ସରଳ, ସୁବୋଧ ଏବଂ ଭାବ ମଧ୍ୟ ଚିତ୍ତାକର୍ଷକ ହୋଇଅଛି । ଅନେକ ସ୍ଥାନରେ ଅଭିନବ ଉପମାଦି ଅଳଙ୍କାର ଦେଖାଦେଇ କବିଙ୍କର ସ୍ୱକପୋଳକଳ୍ପିତତାକୁ କାବ୍ୟଟି ବୁଝାଇ ଦେଉଅଛି । କାବ୍ୟଟି ନଳଙ୍କର କୀର୍ତ୍ତନରେ ପରିପୂର୍ଣ୍ଣ ଥିବାରୁ,— "କର୍କୋଟକସ୍ୟ ନାଗସ୍ୟ ଦମୟନ୍ତ୍ୟାନଳସ୍ୟଚ । ଋତୁପର୍ଣ୍ଣସ୍ୟ ରାଜର୍ଷେଃ କୀର୍ତ୍ତନଂ କଲିନାଶନଂ"— ଏହି ବାକ୍ୟାନୁସାରେ କଳିମଳ ବିନାଶକ ହେବା ଅସମ୍ଭବ ନୁହେ । କାବ୍ୟଟିରେ ଉପାଦେୟ ଭାବ ଅକ୍ଷୁଣ୍ଣ ଥିବାରୁ, ଭଗବତ୍ ପରାୟଣତାର ପରିଚୟ ସର୍ବତ୍ର ସୁଲଭ ହେଉଥିବାରୁ କବିଙ୍କୁ ଭକ୍ତ କବି ଉପାଧି ନଦେଇ ମୁଁ ଅବସର ଗ୍ରହଣ କରିପାରୁ ନାହିଁ । ଏହି କବି ଅଜ ସୁଦ୍ଧା ପ୍ରାୟ ଉନବିଂଶ ଖଣ୍ଡି ପୁସ୍ତକ ରଚନା କରି ଉତ୍କଳ ଭାଷା ଭାରତୀ ଭଣ୍ଡାରକୁ ବିଭୂଷିତ କରିଅଛନ୍ତି । ତନ୍ମଧ୍ୟରୁ ଏହି କାବ୍ୟଟି ସମାଜ ସମାଦରରେ ପ୍ରଥମ ସ୍ଥାନ ଅଧିକାର କରିବ, ଏହା ମୋର ସମ୍ପୂର୍ଣ୍ଣ ଆଶା । ଏହି କାବ୍ୟରେ ମନୁଷ୍ୟସୁଲଭ କୌଣସି ଦୋଷ ଧରିପାରି ନପାରେ । ଯେହେତୁ କାବ୍ୟଟିର ଗୁଣ ଗମ୍ଭୀରତା ବହୁଳ ଭାବେ ବିଦ୍ୟମାନ । "କାବ୍ୟେ ବହୁଗୁଣାକୀର୍ଣ୍ଣେ ଦୋଷଂ ପଶ୍ୟତି ଦୁର୍ମ୍ମତିଃ । ବନେ ବହୁଫଳାକୀର୍ଣ୍ଣେ ପୁରୀଷମିବ ଶୂକରଃ" । ପରିଶେଷରେ ମୋର ଅଶଂସା ଏହି ଯେ ଅବିଲମ୍ବେ କାବ୍ୟଟି ଉପରିତନ ଅଧିକାରୀ-

ମାନଙ୍କ ନେତ୍ରପାତକୁ ସାଦର ଆମନ୍ତ୍ରଣ କରି ପ୍ରତ୍ୟେକ ପାଠ-ଶାଳାମାନଙ୍କରେ ପାଠ୍ୟ ଭାବେ ପଠିତ ହେଉ । ଇତି ଶଂ ।

୨୭-୪-୪୧ } ପଣ୍ଡିତ ଲକ୍ଷ୍ମୀଚରଣ ବିଦ୍ୟାଳଙ୍କାର
ପଞ୍ଚଲିଙ୍ଗପୁର } ପ୍ରଶଂସକ



## ମନ୍ତବ୍ୟ

ସୁନାମଧନ୍ୟ ଉତ୍କଳରେ ସୁପରିଚିତ ଅବସରପ୍ରାପ୍ତ ଡେପୋଟି କଲେକ୍ଟର ଶ୍ରୀମାନ୍ ଅଭିମନ୍ୟୁ ପଟ୍ଟନାୟକ ମହାଶୟଙ୍କ ସଂଶ୍ରବରେ ପ୍ରାୟ ମୁଁ ବାଇଶି ବର୍ଷ ହେଲା ଅଛୁ । ମୋର ଦେଖାହେବା ପୂର୍ବରୁ ତାଙ୍କର କବିତାପାଠବ ଯଥେଷ୍ଟ ଥିଲା । ଯେହେତୁ ତାଙ୍କର ପ୍ରଥମ ଦେଖାରେ ତାଙ୍କ ରଚିତ 'କମଳିନୀ କଣାଣି' ନାମକ ଖଣ୍ଡିଏ ପୁସ୍ତିକା ମୁଁ ଉପହାର ସ୍ୱରୂପ ପାଇଥିଲି । ତାପରେ କଟକପୁର ଅବସ୍ଥାନ ବେଳେ ସରକାରୀ କାର୍ଯ୍ୟରେ ନିଯୁକ୍ତ ଥାଇ ସୁଦ୍ଧା ସେ ମହାଶୟ ନାନାଦି ବିକ୍ଷିପ୍ତ କବିତାବଳୀ ଲେଖିବାକୁ ଆରମ୍ଭ କଲେ । ମୁଁ ସେତେବେଳେ ସେ କବିତା ବାଳିକାଗଣଙ୍କର ଧାତ୍ରୀ ସ୍ୱରୂପ ଥିଲି କହିଲେ ଚଳେ । କିଛି ସମୟ ପରେ ସେ ମହାଶୟ ସରକାରୀ କାର୍ଯ୍ୟରୁ ସସମ୍ମାନ ଅବ୍ୟାହତି ପାଇ କବିତାପ୍ରସୂ ଭଞ୍ଜଭୂମିର ଅଧୁନାତନ ପ୍ରଧାନତମସ୍ଥାନ ରସୁଲକୁଣ୍ଡାରେ ନିଭୃତ କକ୍ଷରେ ରହି, ବାଗ୍‌ଦେବୀ ଆରାଧନାରେ ନିବିଷ୍ଟ ହେଲେ । ଉକ୍ତ ମହାଶୟ ଆଜ ସୁଦ୍ଧା ୧୯ ଖଣ୍ଡ ବହି ଓଡ଼ିଆ ଭାଷାରେ ରଚନା କଲେଣି । କବି ମହାଶୟଙ୍କର ଗୃହିଣୀ ନିଶ୍ଚୟ ଧନ୍ୟ । ଯତଃ— "ଯାଲ୍ଲୋକଦ୍ୱୟସାଧିନୀ ତନୁଭୂତାଂ ସା

ଶୃତ୍ୱସ୍ୱ ଶୃତ୍ୱନ୍"। ପୁନଃ "କୀର୍ତ୍ତେକ୍ଷର ସମ୍ବନ୍ଧା ଚ୍ଚିତ୍ର ଭବତି ଭୂତଳେ"। ତଥାଚ ଶ୍ରୁତିଃ "ଏକଃ ଶବ୍ଦଃ ସମ୍ୟକ୍ ଜ୍ଞାତଃ ସୁପ୍ରଯୁକ୍ତଃ ସ୍ୱର୍ଗେ ଲୋକେ କାମଧୁଗ୍ ଭବତି"।

ମହର୍ଷି ବାଲ୍ମୀକି, ବ୍ୟାସ, ମହାକବି ଶ୍ରୀହର୍ଷ, କାଳିଦାସ ପ୍ରଭୃତି ମହାତ୍ମାଗଣ ପୁଣ୍ୟଶ୍ଳୋକ ନଳମହାରାଜାଙ୍କ ଚରିତକୁ ସଂସ୍କୃତ ଭାଷାରେ ଲିପିବଦ୍ଧ କରିଥିଲେ ସୁଦ୍ଧା ଅନେକ ଭିନ୍ନ ପ୍ରାଦେଶିକ କବି ନିଜ ନିଜର ମାତୃ ଭାଷାରେ ସେହି ପୂତ ନଳ ଚରିତକୁ ଅବଲମ୍ବନ କରି ଅନେକ କାବ୍ୟ ଲେଖିଅଛନ୍ତି। ତଥାପି ତାହା ଜନମନ ଶ୍ରବଣ ଆକର୍ଷଣ କରୁଅଛି, ଯେହେତୁ "ସୁନ୍ଦରେ ତୃପ୍ତିର ଅବସାଦ ନାହିଁ"। ନଳମହାରାଜାଙ୍କ ଚରିତ କେବଳ ସୁନ୍ଦର ନୁହେଁ, ଅଥଚ ପବିତ୍ରକରି। ଯଥା—

"କର୍କୋଟକସ୍ୟ ନାଗସ୍ୟ ଦମୟନ୍ତ୍ୟାନଳସ୍ୟଚ।
ଋତୁପର୍ଣ୍ଣସ୍ୟରାଜର୍ଷେଃ କୀର୍ତ୍ତନଂ କଳିନାଶନଂ"।

ଅଧୁନା କବି ଅଭିମନ୍ୟୁ ପଟ୍ଟନାୟକ ମହାଶୟ ସେହି ଜଗତ୍ପାବନ ନଳଚରିତକୁ ନେଇ 'ନିଷଧେଶ୍ୱର' ନାମକ ଗୋଟିଏ କାବ୍ୟ ରଚନା କରିଅଛନ୍ତି। କାବ୍ୟ ଖଣ୍ଡିକର ପାଣ୍ଡୁଲିପି ପଢ଼ି-ବାର ସୁଯୋଗ ମତେ ମିଳିବାରୁ ମୁଁ ମନୋନିବେଶ ସହକାରେ ତାହା ଥରେ ଆମୂଳଚୂଳ ପାଠ କଲି। ଏହାର ଭାଷା ପ୍ରାଚୀନ କବିମାନଙ୍କ ଭାଷାର ଅନୁରୂପ ହେଲେହେଁ, କବି ନବ୍ୟ ପ୍ରାଚୀ-ନର ସମ୍ମେଳନ ସୁନ୍ଦର ଭାବେ କରିପାରିଅଛନ୍ତି। ଏହା ଅଷ୍ଟା-ଦଶ ସର୍ଗରେ ବିଭକ୍ତ ହୋଇ ମହାକାବ୍ୟ ଲକ୍ଷଣରେ ଲକ୍ଷିତ ହୋଇଅଛି। କୌଣସି ସଂସ୍କୃତ ବା ଉତ୍କଳ କବିଙ୍କର ଭାବ

ଭାଷାର ଅନୁକରଣରେ ଏହା ଲେଖା ହୋଇନାହିଁ । କବିଙ୍କର ଏହାହିଁ ବିଶେଷତ୍ୱ । ସେ କେବେ କାହାକୁ ଅନୁକରଣ ବା ଅନୁସରଣ କରିବା ଜାଣନ୍ତି ନାହିଁ । ତଥାପି ନିଜ ହୃଦୟୋତ୍ଥିତ ନୂତନ ଭାବରାଶି, ନବ ନବ ଶବ୍ଦବିନ୍ୟାସ ପରମ୍ପରା, କାବ୍ୟ-ଶୋଭାବର୍ଦ୍ଧକ ଅଳଙ୍କାର ଶ୍ରେଣୀରେ କାବ୍ୟଟିକୁ ସୁନ୍ଦର ଭାବେ ମଣ୍ଡିତ କରିପାରିଅଛନ୍ତି । ଯେଉଁ ସ୍ଥାନରେ ତାଙ୍କ ହୃଦୟରେ ଯେଉଁ ଭାବ ଉଦୟ ହୋଇଅଛି, ତାକୁ ଗୀତପୂର୍ଣ୍ଣ ଭାବରେ ପ୍ରକାଶ କରିଅଛନ୍ତି । ସୁତରାଂ କାବ୍ୟଟି ମନୋରମ ଓ ଉପାଦେୟ ହୋଇଅଛି ।

ଉପସଂହାରରେ ଏତିକି କୁହାଯାଇ ପାରେ ଯେ, "ଭିନ୍ନ ରୁଚିର୍ହି ଲୋକଃ" ଏହି ଉକ୍ତିଟିର ଯଥାର୍ଥ ତତ୍ତ୍ୱ କବି ଉପଲବ୍ଧି କରି ନିଜର ପବିତ୍ର କର୍ତ୍ତବ୍ୟ ମାର୍ଗରେ ପଥିକ ହୋଇ ଅଛନ୍ତି, ଏହାହିଁ ଆନନ୍ଦର ବିଷୟ । ଇତି ।

ଓଡ଼ିଆ ପି. ପଣ୍ଡିତ,
ଛତ୍ରପୁର ହାଇସ୍କୁଲ
ଗଞ୍ଜାମ

ଶ୍ରୀ ପ୍ରଭାକର ମିଶ୍ର କାବ୍ୟତୀର୍ଥ
୧୫-୧୧-୦୧



## ନିବେଦନ

ଏହି କାବ୍ୟ ମୁଦ୍ରଣରେ ସ୍ଥାନେ ସ୍ଥାନେ ଭ୍ରମ ରହି ଯାଇଥିବା ଯୋଗୁଁ ଶେଷ ଭାଗରେ ଶୁଦ୍ଧିପତ୍ର ଖଣ୍ଡିଏ ଦିଆଗଲା । ସହୃଦୟ ପାଠିକା ପାଠକଙ୍କ ଦୃଷ୍ଟି ଆକର୍ଷଣ କରୁଁ ।





# ନିଷଧେଶ୍ୱର



କୃପାସିନ୍ଧୁ, ଦୀନବନ୍ଧୁ, ସିନ୍ଧୁ-ଜେମା ବନ୍ଧୁ
ମନ୍ଦରଧାରୀ-ସିନ୍ଦୁରାନନା-ଢପେ, ବନ୍ଦୁ
ମନ୍ଦ-କପାଳ ବଶତଃ ମୋରେ କି ଅବନ୍ଧୁ
ହୋଇ ନ ପ୍ରଦାନ ଥରେ କୃପା-ଜଳବିନ୍ଦୁ ।
ବୃନ୍ଦାରକ-ବୃନ୍ଦ-ବନ୍ଦ୍ୟ-ପାଦାମ୍ବୁଜ ଦ୍ୱନ୍ଦୁଁ
ଝଟିତ ମକରନ୍ଦେ ମୋ ମନାଳିନ୍ଦ ଫନ୍ଦୁ ।
ବନ୍ଦ୍ୟ-ଦେବ ସବନ୍ଦନା ବନ୍ଦାପନା ଯୋଗେ
ଯୋଗ ଯୋଗାଡ଼ କରିବେ ମୋ ପାଇଁ ସରାଗେ ।



## ଉପକ୍ରମ

ରାଗ—ବଙ୍ଗଳାଶ୍ରୀ

ପବନ ଭାସ୍କର- କୁଳେ ବାଣ୍ଟୁର
ଜନ୍ମିଲେ ନରବରଠାରେ
ହୋଇଲା ପବନୀ- କୃତ ଯେ ଧରଣୀ
ତାଙ୍କ ମହିମା-ରାଶିରେ ।

ପାପୀ ଦଶାନନ ନାଶେ ଦେବଗଣ
ପ୍ରାର୍ଥନା ବଶେ ଦେବେଶ
ଅବତୀର୍ଣ୍ଣ ହୋଇ ନର-ଦେହ ବହି
ଭୂ-ଭାର କଲେ ଉଦ୍ଧାର ।
ଜନକ ନୃପତି ରାଜ୍ୟେ ଯେ ପ୍ରକୃତି-
ରୂପା ଦେବୀ ହେଲେ ଜାତ
୧ସୀତାରୁ ଜନମି ସୀତା ନାମ ଘେନି
ହେଲେ ଜଗତେ ବିଖ୍ୟାତ ।
ସ୍ରଷ୍ଟା ସୃଷ୍ଟି କଲେ ଚନ୍ଦ୍ର-ସୀତା ଦୁଇ
ପରଖି ନେଇ ସୌଷ୍ଠବ୨
ସୀତାଙ୍କ ଅଧରେ ରଖିଲେ ଭୂମିରେ
ଚନ୍ଦ୍ରେ ଦେଲେ ଶୂନ୍ୟ ଠାବ ।
ରୂପେ ଗୁଣେ ସୀତା ୩ସିତ-ପକ୍ଷ ଶଶୀ
ଜିଣି ନେଲେ କାଳକ୍ରମେ
ଧରଣୀ ତନୟା ସେହୁ ଧରା-ରାଣୀ
ପୂଜ୍ୟା ହେଲେ ଧରା-ଧାମେ ।
ବିଧାତା ବିଧାନ ଭଲ ସଂଘଟନ
ସୀତା-ଶ୍ରୀରାମ ଦମ୍ପତି
ହୋଇ ମହାଦେଶେ ମଣ୍ଡି ନେଇ ଯଶେ
ଧ୍ୟେୟ ହେଲେ ଯୋଗୀ ଚିତ୍ତ ।
ରାମ-ପିତା-ଦଶ- ରଥ ହେଲେ ତୋଷ
ପୁତ୍ର-ବଧୂ ଦେଖି ପୁରେ

---

୧ ଲଙ୍ଗଳସିଅର, ୨ ସୌନ୍ଦର୍ଯ୍ୟ, ୩ ଶୁକ୍ଳ

ସୁତେ ରାଜ-ଗାଦ ପ୍ରଦାନେ ସାମଗ୍ରୀ
ଅୟୋଜନ କଲେ ଘରେ ।
ରାମ ରାଜ୍ୟ ଭାର ବହିଲେ ଦୁଷ୍କର
ହେବ ରାବଣ ବିନାଶେ
ଚନ୍ଦ୍ର ଦେବ-ଗଣେ କୂଟ ଅଚରଣେ
ନେଲେ ତାଙ୍କୁ ବନ ଦେଶେ ।
ସତୀ ଶ୍ରେଷ୍ଠା ସୀତା ମାନସେ ସୁପ୍ରୀତା
ହୋଇ ଗଲେ ପତ ସଙ୍ଗେ
କଚ୍ଛୁ କାଳପରେ ଦଣ୍ଡକାରଣ୍ୟରେ
ବିହରିଲେ ଋଷି ସଙ୍ଗେ ।
କପଟ ବେଶରେ ଦନେ ଲଙ୍କେଶ୍ୱର
ମିଳିଲା ତାଙ୍କ କୁଟୀରେ
ରାମାନୁପସ୍ଥିତେ ସୀତା ନେଇ ରଥେ
ବନ୍ଦୀ କଲା ନିଜ ପୁରେ ।
ପରେ ରାମ ପର୍ଣ୍ଣ- ଶାଳେ ପ୍ରତ୍ୟାଗମି
ଦେଖିଲେ ନାହାନ୍ତି ସୀତା
ବାତୁଳ ସମାନ ଜଙ୍ଗଲେ ଭ୍ରମିଣ
ଖୋଜିଲେ ଜନକ-ସୁତା ।
ଭେଟିଲେ ମାର୍କଣ୍ଡେ ଦଣ୍ଡ, କମଣ୍ଡଳୁ,
ହସ୍ତେ ଅସନ୍ତି ଅଗ୍ରତେ
ଲଭି ପରିଚୟ ହୋଇ ସନ୍ତନୟ
ପୂଜିନେଲେ ଯଥାମତେ ।

ମୁନି ଅସ୍ତ୍ର-ଜ୍ଞାନ ବଳେ ଯେ ନିଦାନ
କଲେ ସେହୁ ରଘୁନାଥ
ଦେବ ହିତ କାମେ ହେଲେ ରସାଧାମେ
ଶତ୍ରୁ ସବଣ ନିହତ ।
କାନନେ ସ୍ୱପତ୍ନୀ ହରାଇ ବୁଲନ୍ତି
ଉଦ୍‌ବିଗ୍ନ ଚିତ୍ତେ ଅବଶ୍ୟ
ସାନ୍ତ୍ୱନା ଉଦ୍ଦେଶ୍ୟେ ସେ କହିଲେ ତାଙ୍କୁ
ନଳ-ଉପାଖ୍ୟାନ ରସ ।
ଚରିତ ସ୍ମରଣେ, ପଠନେ, ଶ୍ରବଣେ
ରସା ତାପ ହୁଏ ହ୍ରାସ
ତାହାର ଅଶ୍ରୟ ନେଲେ ଚିତ୍ତମୟ
ହେବ ସେ ଦୃଢ଼ ବିଶ୍ୱାସ ।
ଚରିତ ବ୍ୟାଖ୍ୟାନ କଲେ ମୁନିବାଣୀ
ଜାଣି ତାହାଙ୍କ ୧ଅଶୟ
ଅଚିରେ ସନ୍ତାପ ମନୁଁ ହେଲା ଲୋପ
ଜ୍ଞାନ ହେବାରୁ ଉଦୟ ।
ଅନନ୍ତବଳମ୍ଭେ ଲଙ୍କେଶଙ୍କୁ ଦମ୍ଭେ
ବିନାଶି ସୀତା ଉଦ୍ଧାର
କରି ରାଜ୍ୟେ ଫେରି ରାଜ ସିଂହାସନେ
ଅସୀନ ହେଲେ ନିକର ।
ପ୍ରବଳ ଅବଜ୍ଞା- ତାପ ବଶେ ପୁଣି
ପ୍ରଣେତା ରହଇ ଯେଣୁ

୧ ମନୋଭିବ

ପ୍ରତକାର ହେତୁ ନଳ-ଦମୟନ୍ତୀ
ଅଖ୍ୟାନ ଲେଖଇ ତେଣୁ ।
ପୂର୍ବଣୁଁ ଉଦ୍ଧୃତ କର ସେ ଚଦ୍ଧତ
ପଦ୍ୟାକାରେ ନିଏ ରଚି
ପାଠିକା, ପାଠକ ପୁଲକ ଦାୟକ
କାବ୍ୟେ ହେବ ଅଭିରୁଚି ।
ପ୍ରକୃତ, ପୁରୁଷ ଚିନ୍ତନେ ଅନିଶ
କାଟେ ଅବସର କାଳ
୧ମନନ ଶକତ ବଶେ ଅନ୍ତଃଶକ୍ତି
ଲୁଚାଇବେ ସୃଷ୍ଟିଜାଲ ।
କାଳକ୍ଷେପେ କାବ୍ୟ- ରଚନା ମୋ ଭାଗ୍ୟେ
ଉପୁଜିଲା ଏହୁ କାଳେ
ହିତ ବା ଅହିତ ହେବ ତହୁଁ ଜାତ
ଜାଣନ୍ତି କୋବିଦକୁଳେ ।
କର୍ମ-କ୍ଷେତ୍ରେ କର୍ମ କରିବା ଧରମ
ଫଳାକାଂକ୍ଷା ରଖି ଦୂରେ
ସେ ନୀତି ଆଚରି ନିଏ ଦିନ ସାରି
ମୋ କର୍ତ୍ତବ୍ୟ କର୍ମ କରେ ।
ଜାଣେ ମୁଁ ନିଶ୍ଚିତ ମୋ କାବ୍ୟ ଗୃହୀତ
ହେବ ସମ ଜ୍ଞାନବନ୍ତେ
ମୋ ମତରୁ ଗୁରୁ ଅବା କ୍ଷୁଦ୍ର ଜନେ
ନ ରଖିବ ପରିଭ୍ରାନ୍ତେ ।

---

୧ ବାରମ୍ବାର ଚିନ୍ତନ

ମୁଁ ଗୁଣ ଦୋଷକୁ ନ ନିଏ ମତକୁ
କରେ ମୋ ଭାବ ପ୍ରକାଶ
ସୁଫଳ କୁଫଳ ପ୍ରତ୍ୟାଶୀ ନ ହୋଇ
ରଚଇ ମୋ ଇଚ୍ଛାବଶ ।



## ପ୍ରଥମ ସର୍ଗ

ଅଖିଳ ଭୂଖଣ୍ଡେ ଭାରତ ବରଷ
ଅଟେ ବିଶିଷ୍ଟ ପ୍ରଦେଶ
ଦେବ ନାରାୟଣ ବ୍ରହ୍ମାଣ୍ଡ କାରଣ
କରନ୍ତି ଯାକୁ ୧ଅଶ୍ଳେଷ ।
ମନ୍ଦର-କନ୍ଦର ଅଶ୍ରିତେ ଶଙ୍କର
ପବିତ୍ର କରନ୍ତି ମହୀ
୨ମାତଙ୍ଗ-ଅଶ୍ୱ- ବାହନୀ ଗଭସ୍ତି
ଯା ଅଙ୍ଗେ ରହନ୍ତି ଶୋହି ।
ଶତ-ଶତ ଯୋଗୀ ଅନାକାଙ୍କ୍ଷୀ, ତ୍ୟାଗୀ
କ୍ଲେଶ-ସହିଷ୍ଣୁଶୀଳ ଜନେ
ଯା' କୋଡ଼େ ବସତି କରି ଦିନ-ରାତି
ମାତୁଥାନ୍ତି ଧର୍ମ କର୍ମେ ।
ହିନ୍ଦୁ-ମତେ ପୁଣ୍ୟ କ୍ଷେତ୍ର ଦରଶନ
ଲଭି ହୁଅଇ ଭାରତେ
ତାହାକୁ ଉତ୍କୃଷ୍ଟ ସାମ୍ରାଜ୍ୟ କହିବା
ଉଚିତ ମଣନ୍ତି ଭକ୍ତେ ।

---

୧ ଅଲିଙ୍ଗନ, ୨ ହସ୍ତୀ

ଯେ ବିଖ୍ୟାତ ଦେଶେ ନିଷଧ ସୁଦେଶେ
ଚନ୍ଦ୍ର ବଂଶୋଦ୍‌ଭବ ରାଜା
ନ୍ୟାୟ ପରାୟଣ, ଧର୍ମ-ପ୍ରାଣ ବୀର-
ସେନ ପାଳନ୍ତି ପରଜା ।
ଯଜ୍ଞ ଅନୁଷ୍ଠାନ, ଦେବତା ଅର୍ଚ୍ଚନ,
ଅତିଥି-ଜନ ସତ୍କାରେ
ଧନ ସେ ହରନ୍ତି ଦୀନ ଜନେ ତୃପ୍ତି
କରୁଥାନ୍ତି ତୋଷଭରେ ।
ପ୍ରଜାଙ୍କୁ ମଣନ୍ତି ଯଥା ପୁତ୍ର, ନାତି
କାହାର କଷ୍ଟ ମୋଚନେ
ପଶ୍ଚାତ୍‌ପଦ ନୋହି ଅଭାବକୁ ଧ୍ୟାୟି
କରନ୍ତି ସୁବିଧା ଯତ୍ନେ ।
କନକ, ରତନ- ବେଶ, ଧନ-ଧାନ୍ୟ
ପୂରିଥାନ୍ତି ରାଜକୋଷେ
ତଥାପି ରାଜନ ମନ ରହେ କ୍ଷୀଣ
ପୁତ୍ର ଅଭାବେ ଅନାଶେ ।
ଲୌକିକ ବିଶ୍ୱାସ ପୁତହିଁ ଅବଶ୍ୟ
ପୂତ ନରକରୁ ତାହି
କରିବା ସାମର୍ଥ୍ୟ ପୂରାଣ ଉକତ
ସନ୍ଦେହ ମୁଁ ମଣୁଥାଇ ।
"ସ୍ୱକର୍ମ ବନ୍ଧନ ବଳେ ଜୀବଗଣ
ସମ୍ପାଦନ୍ତି ପାପ, ଧର୍ମ"

ଏକରୁ କୁଫଳ ଅନରୁ ସୁଫଳ
ଭୋଗୁଥାନ୍ତି ଅନୁଦନ ।
ସେ ନ୍ୟାୟସଙ୍ଗତ ହେଲେହେଁ ଧୀମତ
ନରଙ୍କ ଦୃଢ଼ ଧାରଣା
ସୁନାମ ନରକୁଁ ତାରିବାକୁ ମୁଖ୍ୟ
ପାପ ମାପ ପୁପ କନା ।
ଜୀବ ବ୍ରହ୍ମଅଂଶ ହେବାରୁ ଅବଶ୍ୟ
ଦୃଢ଼ କାମନା ସୁଫଳ
ପ୍ରଦାନବ କାଳେ ରହନ୍ତି ଅଃଳେ
ଯୀଶ ଚନ୍ତା ନଚକୁଳ ।
ଅନୁସର ନୀତ ଶୁଭ କର୍ମେ ମାତ
ଦୃଢ଼ କଲେ ରଜା ମତ
ଅଚରେ ସନ୍ତାନ ଲଭିଲେ ରାଜନ;
କଲେ ମନସ୍ତାପ ଶାନ୍ତ ।
ତୁଟିଲା ଯେ ମୋହ ହେଲା ଶୁଦ୍ଧ ଦେହ
ପୁଣ୍ୟ କର୍ମେ ବଢ଼େ ସ୍ପୃହା
ଶାସ୍ତ୍ରୋକ୍ତ ବଚନ ପ୍ରମାଣେ ରାଜନ
ବଢ଼ାଇଲେ ଜୀବେ ଦୟା ।
୧ଭୂୟୋଭୂୟଃ ପର- ଶଂସା ପାତ୍ର ହୋଇ
ରହିଲେ ମହୀ ମଣ୍ଡଳେ
ଶୁଭ୍ର ଯଶୋ-ବୈଜୟନ୍ତୀ୨ ବୈଜୟନ୍ତ୩
ଊର୍ଦ୍ଧ୍ୱରେ ଉଡ଼ିଲା ହେଲେ ।

୧ ପୁନଃପୁନଃ, ୨ ପତାକା, ୩ ଇନ୍ଦ୍ରପୁରୀ,

# ଦ୍ୱିତୀୟ ସର୍ଗ

ଯଥା କାଳେ ଜାତ- କର୍ମ ଅନୁଷ୍ଠାନ
କରିଗଲେ ଶିଶୁଙ୍କର
ଜ୍ୟୌତିଷିକ ମତେ ଜନମ ନକ୍ଷତ୍ରେ
ଋଷିରେ ହେଲେ ବତ୍ସର ।
*ସର୍ବାନୁଶୀଳନ କ୍ରମେ ନଳ-ନାମ
ଦିଅଗଲେ ଶିଶୁବରେ
ଶୁକ୍ଳ ପକ୍ଷ ଶଶୀ ସମ ସେ ବଢ଼ନ୍ତି
ରାଜପୁର-ଆକାଶରେ ।
ସୁଭଗ, ସୁଭଗା ଜନକ, ଜନନୀ
ତୋଷ-କୁମୁଦ ବିକାଶେ
ସହଚରୀ ଗଣ- ତାରକା ସମାନ
ଘେରି ରହନ୍ତି ଅକାଶେ ।
ପ୍ରସୂତ ଅଗାର ବ୍ୟାପ୍ତ ଅନ୍ଧକାର
ହେଲେ ଅପସରି ରହେ
ବିଧୁ ଜ୍ୟୋତ୍ସ୍ନା ବଶେ ତାହାର ବିନାଶେ
ମନ-ଧ୍ୟାନ କିବା ଦିଏ ।
ପୂର୍ବ କର୍ମ ଫଳ କରିଯାଏ ଦୂର
ଦେଖି ଶୈଶବ ଅକୃତି
କେ ବିଭବଶାଳୀ କେ ବିଭବ-ହୀନ
ନଦାନଇ ବୁଦ୍ଧି-ମତି ।

---

* ସର୍ବଶ୍ଚଗୁରେ

ଅନୁଭବୀ ଜ୍ଞାନୀ ତର୍କଣା ବଶତଃ
ଭାବିଲେ ଶିଶୁ ମହାତ୍ମା
କୁଳ ୧ପ୍ରଭପତ୍ର ବିକାଶନେ ମର୍ତ୍ତ୍ୟେ
ବିରାଜିଲେ କି ଚନ୍ଦ୍ରମା ।
ଲାଳନେ, ପାଳନେ ଲାଗି ରାଜା, ରାଣୀ
କରନ୍ତି ସୁବିଧା ଯେତେ
୨ପାଦପଙ୍କ୍ତି ଛାୟା ରହେ ଯଥାବିଧ
ତଥା ଜଗନ୍ତି ସେ ଦୂର ।
ଦୁର୍ଘଟଣା ଯୋଗେ ସନ୍ତାନ ଶରୀରେ
ରୋଗ ହେଲେ ଅକର୍ଷଣ
ଶଙ୍କା, ଯନ୍ତ୍ର ଭରେ ଲାଗି ଶୁଶ୍ରୂଷାରେ ୩
କରନ୍ତି ସୁସ୍ଥ ବିଧନ ।
କ୍ରମେ କ୍ରମେ ବାଳ ଲଭି ଜ୍ଞାନ ବଳ
ହେଲେ ସେ ଅଦାନ ପାତ୍ର
ଯୋଗ୍ୟ ଗୁରୁବର୍ଗ ଶାସନେ ସକଳ
ବିଦ୍ୟାରେ ହେଲେ ଶିକ୍ଷିତ ।
ଅଜନ୍ମୁ ବିଦ୍ୱାନ ଥିବାରୁ ନନ୍ଦନ
ଅନାୟାସେ ବହୁ ଶାସ୍ତ୍ରେ
ପାରଦର୍ଶୀ ହେଲେ ସାହିତ୍ୟେ, ନାଟକେ
ଅଳଂକାର ଅଭ ଗ୍ରନ୍ଥେ ।
ମନ ନିବେଶିଣ ହସ୍ତ ଶାସ୍ତ୍ର ଜ୍ଞାନ
ଲଭିଲେ ସେହି ଅପାର

---

୧ ସମ୍ମାନ, ୨ ବୃକ୍ଷକୁ, ୩ ସେବା

ଘୋଟକ ଲକ୍ଷଣ, ଗୂଳନ, ସ୍ତମ୍ଭନ
ବଶୀକରଣେ ସେ ବୀର (ହେଲେ) ।
ପ୍ରବଳ, ପ୍ରତାପୀ ଅଶ୍ୱ ଦେଇ ଠୁକ
ତାଙ୍କୁ ୧ସାରମେୟ ବତ
୨ପ୍ରତୋଦ ବନ୍ଧନ ଗୂଳନେ ନିପୁଣ
ହେବା ଲଭିଲେ ସାମର୍ଥ୍ୟ ।
ମନ୍ତ୍ରେ ମୋହି ଅଶ୍ୱ ପବନ ସଦୃଶ
ଗତି କରଣେ ସକ୍ଷମ
ହୋଇ ମହୀ'ମେ ଖ୍ୟାତ-ସୁମନସ-
ଦ୍ୱାରେ ଦଶିଲେ ମୋହନ ।
ସର୍ବ ଶାସ୍ତ୍ର ଜ୍ଞାନେ ନନ୍ଦନ ମଣ୍ଡିତ
ଥିବାରୁ ହେଲେ ଅଦ୍ଭୁତ
ଯଥା "ସ୍ୱଚ୍ଛ ନୀରେ ଭରଥିବା ସର
କାହାରେ ନୁହେ ନନ୍ଦିତ" ।
ବସନ୍ତ ଆଗମେ କରନ୍ତି ପ୍ରଚାର
୩ବସନ୍ତ-ଦୂତ ନିକର
ତଥା ବୁଧଗଣ ରାଜ ସୁତ ଗୁଣ
ଭୂ'ମେ କଲେ ପ୍ରସାର ।
ଶାସ୍ତ୍ର ଚର୍ଚ୍ଚା କାଳେ ସେ ବିଜୟୀ ହେଲେ
ତା' ଦେଖି ନିଜ ଶିକ୍ଷକ
ମନରେ ଭାବିଲେ ଲଭିବେ ଅଣରେ
ରାଜନ ପାରତୋଷିକ ।

---

୧ କୁକୁର, ୨ ଲଗାମ, ୩ କୋକିଳ

ସେ ଆଶା-ପାଦପ    ଫଳିଲା ସୁଫଳ
ସ୍ତନଠୁଁ ହେଲେ ବିଭିନ୍ନ
ସଜନ ଦମ୍ପତି    କଲେ ହର୍ଷମତି
ଦେଖି ସୁତ ଗୁଣବାନ ।
ଶସ୍ତ୍ର ବିଦ୍ୟା ଜ୍ଞାନ    କଲେ ଉପାର୍ଜନ
୧ନୈସର୍ଗିକ ଯାହା ଗୁଣ
ନାନାବିଧ ଶର    ଚାଳନେ ଆବର
ଉପସଂହାରେ ଯେ ଜ୍ଞାନ ।
ସ୍ୱନ ଶୁଣି ମନୋ-    ଭେଦୀ ନିକ୍ଷେପିଣ
କରିବାରେ ହେଲେ ବର
ବୀରତ୍ୱ ଗୁମାନ    ସବୁରି ନିୟୁନ
ହେଲା ସମ୍ମୁଖେ ତାଙ୍କର ।
ବାକ୍ୟ ଯୁଦ୍ଧ କାଳେ    ୨ବାଗ୍ମୀ ପରକାରେ
ରସାରେ ହେଲେ ବିଦିତ
ନାନାବିଧ ଗୁଣ    ହୋଇ ସମ୍ମିଳିତ
ପାର୍ଶ୍ୱେ ରହେ ଛନ୍ଦବତ ।
ଏସନ ୩ପୌଗଣ୍ଡ    ସମସ୍ତ ବିତିଲା
ଯୌବନ-ସଖା ଆଦର
କରି ନଳେ କୋଳେ    ବସାଇ ସେ କାଳେ
ଦ୍ୟୁତି କଲା ମନୋହର ।
କାଞ୍ଚନ ବରନ    ସେ କଲା ପ୍ରଦ୍ୟୋତ୪
ମୁଖ-ଶବଦ ଗମ୍ଭୀର

---

୧ ସ୍ୱାଭାବିକ, ୨ ବାକ୍‌ପଟୁ, ୩ କୌମାର, ୪ ଦୀପ୍ତ

ରସାଣିଲ୍ ଅଙ୍ଗ ପ୍ରତ୍ୟଙ୍ଗ ତାଙ୍କର
ବନ୍ଧୁ ମାନସେ ଆଦର ।
ମୁଖ ୧ଦ୍ୱିଜରାଜେ ଗତି ମୃଗରାଜେ୨
ବକ୍ଷ କପାଟଙ୍କୁ ନିନ୍ଦେ
ବାହୁ ଗଜ ଶୁଣ୍ଡ କହିଲେ ଅଯଥା
ନ ମଣିବେ କବି ବୃନ୍ଦେ ।
ମୁକୁର ବମ୍ଭକୁ ତୁଚ୍ଛ କରନ୍ତିଏ
ମୁଖ ଦ୍ୟୁତି ନଳଙ୍କର
ପଦ୍ମେ ପରାଜିତ କରନ୍ତି ଯେ ନେତ୍ର
ଗଣ୍ଡ-ମଣ୍ଡଳ ଚନ୍ଦ୍ରକ ।
ତଥି ମଧ୍ୟେ ବଢ଼େ କ୍ଷୁଦ୍ର ଶ୍ମଶ୍ରୁରାଜି
ମୃଗାଙ୍କେ ଯଥା କାଳିମା,
ଦର୍ଶକ ଦର୍ଶନ ଇନ୍ଦ୍ରିୟ ପାବନ
ହେବ ତ ଦେଖି ୩ସୁଷମା ।
କରାଙ୍ଗୁଳି ଧରେ ଶରାଳୀ ସଦୃଶ
ଜନମ୍ଭୁ ସେ ୪ଯୁଦ୍ଧପ୍ରଧାନ
୫ଅରିନ୍ଦମ ବୀର ବୋଲନ୍ତି ତାହାଙ୍କୁ
ଧେନନ୍ତି ଯେ ଯୋଦ୍ଧାଗଣ ।
ଭ୍ରୂଲତା ଗଠନ ଅତି ମନୋରମ
କୋଦଣ୍ଡ ତା ଉପମାନ
କହିଲେ ଅଯଥା ନୋହିବ କଥିତ
ଦେହେ ରାଜେ ବୀର ଚିହ୍ନ ।

---

୧ ଚନ୍ଦ୍ରେ, ୨ ସିଂହେ, ୩ ସାତିଶୟ ଶୋଭା, ୪ ଯୋଦ୍ଧା,
୫ ଶତ୍ରୁ ଦମନକାରୀ

ଭଦ୍ରା ମୁଖେ ସ୍ମିତ ଛଟା ବିକଶିତ
ରୌପ୍ୟ-ସମ୍ପୁଟଙ୍କ[1] ସମ
ଦନ୍ତପନ୍ତି ମୋତି ଗୋପନେ-ଭରତ
କରଣେ ଉତ୍ସୁକ ମନ ।
କ୍ରୋଧେ ମହେଶ୍ୱର ଅତନୁ-ଶରୀର
ପୂର୍ବକାଳେ ଥିଲେ ନାଶି
ସେ କିବା ସ୍ୱତନୁ ବହିଲ ଏଖଣି
ନଳରୂପେ ଭୂମେ ଆସି ।
ମୁଖ ସନ୍ଦର୍ଶନେ ଭାବ ଆସେ ମନେ
ଧୈର୍ଯ୍ୟ, ସ୍ଥୈର୍ଯ୍ୟାଦି[2] ସୁଗୁଣେ
ନଳ ଦେହେ ଠୁଳେ ବସନ୍ତ ଉଚ୍ଛଳ
[3]ସାର୍ବଭୌମ ହେବେ ଦିନେ ।
ନଗର ଭ୍ରମଣେ ଗଲେ ନଳରାଣି
ଉତ୍ସୁକେ ନିରେଖି ଜନେ
ବୃଷଭ ଉପମା କରୁଥାନ୍ତି ଜଣା
ଲଗିଣ ଗୁଣ ବ୍ୟାଖ୍ୟାନେ ।
ତାଙ୍କ ଗୁଣ ଚୟ ଜଣାନ୍ତି ନିଶ୍ଚୟ
ସେ ଜଣେ ଦେବ-ପୁରୁଷ
ଦେବତା ସୁଗୁଣ ନିଚୟେ ସେ ଯେଣୁ
ମଣ୍ଡିତ ଥିଲେ ଅବଶ୍ୟ ।
ପିତା ଦତ୍ତ ବୀର୍ଯ୍ୟେ ସନ୍ତାନ ଉଦ୍ଭବେ
ସେ ନୀତ ଶାସ୍ତ୍ର କଥିତ

---

୧ ଫରୁଅ, ୨ ସ୍ଥିରତା; ୩ ଚକ୍ରବର୍ତ୍ତୀ

ବୀରସେନ ଯାଗେ ଲଭି ହବିର୍ଭାଗ୧
କେ ଦେବ ହେଲେ ଅଚେତ ।
କିବା ସର୍ବ ସୁରେ ପାଇ ହବ୍ୟ-ଧାର
ରଜାଠାରେ ଥିଲେ ରଣୀ
ନେ ଯା' ରୂପ, ଗୁଣୁଁ ଦେଇ କିଯ୍‌ଦଂଶ
ଛାଡ଼ି ଦେଲେ ନଳ ଅଣି ।
ରଣ ପରିଶୋଧ ଅର୍ଥେ ରାଜପୁରେ
ପୁତ୍ରମଣି ହେଲେ ଜାତ
ସେ ହେତୁ ସଦ୍‌ଗୁଣ ନିଚୟ ନିଧାନ
ଥିଲେ ବୀରସେନ ସୁତ ।
ପୁରାକୃତ ଫଳେ, ବାଲ୍ୟ ଦତ୍ତ ଫଳେ,
କିବା ଦେବ କୃପାବଳେ
ରଜା ଶ୍ରେଷ୍ଠ ନଳ ବୋଲାଇ ଭୂତଳେ
ବାହାରିଲେ ଯୁବା କାଳେ ।

## ତୃତୀୟ ସର୍ଗ

ନଳ ରଜା ଖ୍ୟାତ ପୁର, ପଲ୍ଲୀ ମାତ
ରହିଲା ଅନଳ ବତ
ରଜା, ରଣୀ ଚିତ୍ତ ହେଲା ସ୍ଫୂର୍ତ୍ତିଯୁତ
ଚିନ୍ତିଲେ ସନ୍ତାନ ହିତ ।
ସତ୍ତ୍ୱ ଗୁଣେ ପୂର୍ଣ୍ଣ ଥିଲାରୁ ରାଜନ
ବଦଳିଲା ତାଙ୍କ ମତ

---

୧ ଅଦ୍ଭୁତ

ନଳେ ଦଣ୍ଡ ଛତ୍ର ପ୍ରଦାନ କରିବତ
ରାଜାସନେ କଲେ ସ୍ଥିତ ।
ବାନପ୍ରସ୍ଥ ବ୍ରତେ ବଳାଇ ସେ ମତ
ଛାଡ଼ିଲେ ଗୃହସ୍ଥାଶ୍ରମ
ପୁର ତ୍ୟାଗ କରି କାନନେ ବିହରି
ରହିବା ଭାବିଲେ ଧର୍ମ ।
ନୈଷଧକେ ରାଜ- ସିଂହାସନେ ବସି
ନଳ ହେଲେ ନରପତି
ପୁର-ପୁରେ ୧ପୁର- ନ୍ଦର ପରକାର
ବିକାଶିଲ୍‌ ତାଙ୍କ ଭାତି ।
୨ଆର୍ଜ୍ଜବେ ସେ ଧୀନ ଜନଙ୍କ ସମାନ
ଦୟାଦ୍ରୋଣୀ ତାଙ୍କ ହୃଦ
କ୍ଷମା ୩ସରିତ୍‌ପତି କହିଲେ ନୃପତେ
ଯଥାର୍ଥ ମଣିବ ବୁଧ ।
ସହଜେ ନୃପତି ୪ତିତିକ୍ଷାରେ ଜିତି
ନିଅନ୍ତି ଯେ ବସୁମତୀ
ଅତ୍ୟୁକ୍ତି ତାହାକୁ ବୋଲିଣି କାହାକୁ
କହିଁତ ନ ହେବ ମତି ।
୫ମାର୍ଦ୍ଦବେ ଜଡ଼ିତ ରହେ ହୃଦ ଯେସ
୬ପୟେ ନବନୀତ ପ୍ରାୟେ
ସମୟେ ମନ୍ଥନ ଯୋଗେ ନିଜ ଗୁଣ
ବାହାର ହୁଏ ନିଶ୍ଚୟ ।

---

୧ ଇନ୍ଦ୍ର, ୨ ସରଳତା, ୩ ସାଗର, ୪ ସହିଷ୍ଣୁତା,
୫ କୋମଳତା, ୬ କ୍ଷୀର

ଜ୍ଞାନେ ବୃହସ୍ପତି    ମନ୍ତ୍ରଣେ [୧]ଭୃଗୁଜ
ରୂପେ [୨]କିନ୍ନରେ ହରାଇ
ଦେବାକୁ ସକ୍ଷମ    ସେ ଥିଲେ ନିଦାନ
ଧର୍ମ ପ୍ରତିମୂର୍ତ୍ତି ହୋଇ ।
ବ୍ରହ୍ମତେଜ ଦେହେ    ମାତି ରହିଥାଏ
ସେ ଥିଲେ ବଳିଷ୍ଠୋତ୍ତମ
ସେ କଥା ସରବେ    ମାନିଣ ଗୌରବେ
ଦେଖୁଥାନ୍ତି ଅନୁକ୍ଷଣ ।
ପୁରଜନ ପ୍ରଜା-    କୁଳଙ୍କ ସନ୍ତୋଷ
ଭାଜନ ଥିଲେ ନରେଶ
ଆବ୍ରହ୍ମ ଚଣ୍ଡାଳ    ତାଙ୍କ କୀର୍ତ୍ତିଜାଳ
ଗାନ କରନ୍ତି ଅନିଶ ।
[୩]ଈତି-ଭୟ ତେଜି    କୃଷକ ସମୂହ
ନିଜ କର୍ମେ ଥାଇ ରତ
ଦ୍ୱେଷ, ହିଂସା, ବୈର    କେହି ନ ଆଚର
ସର୍ବେ ରହିଲେ ତୃପତ ।
ସର୍ବ ଗୁଣାନ୍ୱିତ    ରାଜା ପ୍ରଜା ହିତ
ଚିନ୍ତା ପୂରାଇ ମାନସେ
ଅଧୀନସ୍ଥ କର୍ମ-    ଚାରୀ ଗଣେ ସେହି
ଚଳାନ୍ତି ଦକ୍ଷତା ବଶେ ।
କେହି ତା' ଗୁହାରି    ଜଣାନ୍ତେ ରାଜନେ
ତତ୍କ୍ଷଣେ ହୁଏ ବିଚାର

---

୧ ଶୁକ୍ର, ୨ ସ୍ୱର୍ଗଗାୟକେ ୩ ଅତିବୃଷ୍ଟି ଅନାବୃଷ୍ଟି

ଅବଲମ୍ବେ ଯଥା- ଯୋଗ୍ୟ ନ୍ୟାଯ୍ୟ ଲଭି
ରହନ୍ତି ସରବେ ସ୍ଥିର ।
ତାହାଙ୍କୁହିଁ ଦନେ ହେଲେହେଁ ଅଜ୍ଞନେ
ନ କରନ୍ତି ଅପମାନ
ଯେମନ୍ତ ଗୃହସ୍ଥ ପରିବାର ବର୍ଗେ
ତଥା ପାଳନ୍ତି ସ୍ୱଜନ ।
ଅପରାଧୀ ଯଥା ଶାସ୍ତି ନେଇ ଲଭି
କେ ନୁହେ ଅପରନ୍ତୁପ୍ତ
ଶାସନ ଖସଡ଼ା ଦୟା, କ୍ଷମା ଯୋଡ଼ା
ହୋଇ ରହେ ଅବିରତ ।
ବଳ ଯହିଁ ରହେ କ୍ଷମା, ଦୟା ତହିଁ
ରହିବା ମାତ୍ର ବିରଳ
ହେଲେ ସେ ସମ୍ପତ୍ତି ରାଜା ଦେହେ ମାତ
ରହିଥାନ୍ତି ଚିରକାଳ ।
କାରାଗାର ରହେ ବନ୍ଦୀ-ଜନ-ହୀନ
ରାଜା ସୁବିଶ୍ରୁର ଭାବୁଁ
ଉପଦେଶ ଲଭି ଦୁର୍ବୃତ୍ତ ମାନବେ
ଶୋଧନ୍ତି ଦୁର୍ଗୁଣ ଗର୍ଭ୍ଭୁଁ ।
"ଦୁରଗୃରହୀନ ଦେଶେ କାରାଗୃହ
ରହିବା ନିଷ୍ପ୍ରୟୋଜନ
୧ନଗ୍ନ ଦେଶେ ଶୁକ୍ଳ- କାସ୍ତି ରହିଲେ କି
କରେ ଉଦର ପୋଷଣ ।

୧ ଲଙ୍ଗଳ

ଶୋଭା ବିନା ବିକ୍ରା କରେ କି କାରଣ
ନିରର୍ଥକ ତା' ଜୀବନ
କାନନ-ମଲ୍ଲିକା ସମ ତା ଜୀବିତା
ନଷ୍ଟେ ଅଟେ ଅକାରଣ ।"
କେବେ ହେଲେ କେହୁ ନ ପାଇବ କହୁ
ଅନ୍ୟାୟ କଲେ ରାଜନ
ସବୁଗେ ଯେମନ୍ତ ଚଳେ ଅବିରତ
ମଘବାନ ସୁ-ଶାସନ ।
ମର୍ତ୍ତ୍ୟଧାମେ ଦେବ- ଗଣ ମଧ୍ୟୁଁ ଏକ
ପ୍ରୀତେ ହେଲେ ଉପଗତ
ଜନମ କାଳରେ ଭାବିଲେ ଯା' ଧୀରେ
କାଳେ ତା ହେଲା ବ୍ୟକତ ।
ଦେବୋପମ ଗୁଣ ବାହୁ ପରାକ୍ରମ
୧ଅରାତି ରଖେ ବିଦୂରେ
"ଯେମନ୍ତ ସଜ୍ଜନେ ବିପତ୍ତି ଦୁର୍ଜ୍ଜନ
ସର୍ଜନା କରି ନପାରେ" ।
ପ୍ରଜାକୁଳ ସଦା ରାଜାଙ୍କରେ ବନ୍ଧା
ସେ କଥା ରସା ପ୍ରଚୁର
ହେବାରୁ ସବବେ ଭୟ ରଖି ଗର୍ଭେ
ନ ଆସିଲେ ତାଙ୍କ ପୁର ।
"ରାଜା, ପ୍ରଜା ମତ ଅଭିନ୍ନ ଥିଲେ ତ
୨ଜିଗୀଷା ଅରାତି ମନେ

୧ ଶତ୍ରୁ, ୨ ଜୟଇଚ୍ଛା

ନ ବସିବ ହେଲେ ଜଣାନ୍ତି ସର୍ବେ
୧ସାମରିକ ବୀରମାନେ ।
ଭେଦ ଭାବ ଯହିଁ ଶତ୍ରୁ କଳା ନେଇ
ଦୃଢ଼ କରେ ଆକ୍ରମଣ
ଜମ୍ବୁ ନେତ୍ର ଛାର ଶିରେ ଫଣଧର
ଭଡ଼ିଇ ନଥାଏ ଅନ" ।
"ଶୁଣେ ନରନାଥ ଦୁଷ୍ମନ୍ତ କୁମାର
ଦୃଢ଼ ମୀତ ବାକ୍ୟ ସେହି
ସେହି ହେତୁ ପିକ ବାୟସୁଁ ଅଧିକ
ଵିବୁଧେ ଥାଆନ୍ତି କହି ।
ସୁଗୁଣ ଦୁର୍ଗୁଣ କରେ ପରାହତ
ମୀତ ରସା ପ୍ରକଟିତ
୨ତପନ ଉଦୟେ ୩କୁହେଳୀ ନିପାତ
ସ୍ୱତ ଅସେ ଦୃଷ୍ଟିପଥ ।
ଧୀମାନ ମାନବ ସଙ୍ଗତେ ଅଧମ
ନ ମିଶଇ କଦାଚନ
ଯେମନ୍ତ ମୟୂର ସଙ୍ଗତେ ବାୟସ
ନ ହୁଏ କଦା ମିଳନ ।"
ଶତ୍ରୁ ରାଜା ତେଣୁ ରାଜ୍ୟ ଆକ୍ରମଣ
ଚିନ୍ତନେ ହେଲେ ବିରତ
ନଳରାଜା ସାର୍ବ- ଭୌମ ନରପତି
ରୂପେ ଜଗତେ ବିଖ୍ୟାତ ।

୧ ଯୁଦ୍ଧସମ୍ବନ୍ଧୀୟ, ୨ ସୂର୍ଯ୍ୟ, ୩ କୁହୁଡ଼ି

ସୁଖ୍ୟାତ ନଗେନ୍ଦ୍ର ଉପରେ ବିଜୟ
କରିନେଇ ନଳରାଜା
ପ୍ରାକୃତ ଶୃଙ୍ଗାର ସୁରସୁଁ ବିଦୂରେ
ରଖିଥାନ୍ତି ନିଜ ମଜ୍ଜା ।
କାମିନୀ-ପ୍ରସଙ୍ଗ ଯହିଁ ପ୍ରସ୍ତାବିତ
ତହିଁ ନଳ ପରାଙ୍‌ମୁଖ
ହୋଇଣ ଏକାନ୍ତ ପ୍ରକୋଷ୍ଠେ ନିରତେ
ରହିବା ମଣନ୍ତି ସୁଖ ।
୧ଗାର୍ହସ୍ଥ୍ୟ ସୁଧର୍ମ ମଣନ୍ତି ସେ ନ୍ୟୂନ
୨ଅନୂଢ଼ ଜୀବନ ସ୍ରୋତେ
ଭାସିବାକୁ ସେହୁ ନେଉଥାନ୍ତି ଧାପି
ଯୁବକ ସରଳ ଚିତ୍ତେ ।
"ବିଷୟାନୁଭବ- ବଳେ ସିନା ଜନ
ଦୃଢ଼ ରଖଇ ମାନସେ
ଅଭାବେ ତାହାର ଭାବୁଥାଏ ନର
ଉତ୍ସବ ତା ଇଚ୍ଛାବଶେ ।
ମାୟା ହସ୍ତେ ସେହୁ ବନ୍ଧା ହୋଇ ରହୁ
ଖେଳେ ପୁତ୍ତଳିକା ବତ
ଯୀଶ କୃପା ବଳ ନ ଭାବେ ଯୁବକ
ଅନୁଭବ-ହୀନ ଗାଢ ।"
ସର୍ବ ଦିଗେ ଯଶ- ବର୍ଣ୍ଣେ ନରଈଶ
ଥିଲେ ତ ପ୍ରଶାନ୍ତମନା

---

୧ ଗୃହୀ, ୨ ଅବିବାହିତ

ଉଦ୍ଧତ ଯୌବନ ତାଙ୍କ ଅଙ୍ଗେ ସ୍ଥାନ
ଲଭି କରିଲ ଉନ୍ମନା ।
ଅବସ୍ଥା କରିଲ ମନେ ଉଦ୍ଦୀପନ
[୧]ପରିଗ୍ରହେ ଲାଳାୟିତ
ଦେଖି ପରିଜନେ ମନ ବିମୋହନେ
ଲାଗିଲେ ଅନବରତ ।
ଦନ୍ତିଁ ଦନ ଚିନ୍ତା ବଢ଼ି ଅପ୍ରମିତ
ନୃପତେ କଲା ବିବ୍ରତ
ରୂପେ ଗୁଣେ ପୂର୍ଣ୍ଣ ରମଣୀ ରତନ
ଅନ୍ୱେଷଣେ ହେଲେ ରତ ।
ମନେ ମନେ ଗୁଣି ଜୀବନ ସଙ୍ଗିନୀ
କାମନା ପୂରିତ ହୃଦେ
ସାମ୍ରାଜ୍ୟ ଶାସନ କର୍ମେ ମନ ନ୍ୟୂନ
କଲେ ରହି ଅବସାଦେ ।
"ଜୀବେ ସ୍ୱାର୍ଥପର ସେ କଥା ନିକର
କା' ସୁଖ କେହି ନ ଲୋଡ଼େ
ଗରଭ ପୂରଣ ଉପାୟ ଚିନ୍ତନ
ସକଳ ହୃଦୟେ ବଢ଼େ ।"
ବାହ୍ୟେ ରଜା ମନ ପ୍ରବର୍ତ୍ତିନେ ଧ୍ୟାନ
ଦେଖାଇ ନେଲେ ଗୂଢ଼ର
ମୂନବ ସଦିଚ୍ଛା ଅନୁକୂଳ୍ୟ ବ୍ରତେ
ନ ହୋଇ କେହି ଅତୁର ।



୧ ପତ୍ନୀ

## ଚତୁର୍ଥ ସର୍ଗ

୧ଦାରେଷଣା-ଶନ୍ତା ଜଡ଼ିତେ ଯେ ନଳ
କାଟନ୍ତି ଦିବା ରଜନୀ
ତାହାଙ୍କ ଚରିତ ନକରେ ବର୍ଣ୍ଣନା
ବିଦର୍ଭେ ନିଏ କାହାଣୀ ।
ବୀର ଭୀମସେନ ସେ ଦେଶେ ରାଜନ
ମଣ୍ଡିତ ରହନ୍ତି ଯଶେ
୨ନିକଷେ କଷିଲେ ନଳ, ସେ ସମାନ
ହେବେ ସଦଗୁଣ ବଶେ ।
ତଥାପେ ପ୍ରଭେଦ କେବଳ ବୟସେ
ନଳ ଯେ ସୁଶିକ୍ଷ ଯୁବା
ଅନ୍ୟ ଅନୁଭବୀ ପ୍ରୌଢ଼ ନରପତି
ସଜ୍ଜନ-କୁଳ-ମଘବା ।
ଭୀମସେନ ପାନ୍ଥ ସୁବିଧା କରନ୍ତି
ପନ୍ଥ-ଭବନ ନିର୍ମାଣି
ଖାଦ୍ୟାବାସ ଦେଇ ଗୌରବେ ରଖାଇ
ତୋଷୁଥାନ୍ତି ବହୁପ୍ରାଣୀ ।
ଭଗ୍ନ ଦେବାଗାର କଲେ ସେ ଉଦ୍ଧାର
ନବ ଦେବାଳୟ ଗଢ଼ି
ବେଦୋକ୍ତ ସଂସ୍କାର ଯଥାବିଧି କରି
ଧର୍ମେ ରହୁଥାନ୍ତି ଜଡ଼ି ।

---

୧ ପତ୍ନୀଇଚ୍ଛା, ୨ କଷ୍ଟିପଥର

ନାନାବିଧ ଯାଗ କରଣେ ସବିଗ
କରୁଥାନ୍ତି ବାରେ ବାରେ
ଲକ୍ଷ ଲକ୍ଷ ଜୀବ ଲଭିଣ ସୁଭକ୍ଷ
ପ୍ରୀତ ହୁଅନ୍ତି ରାଜାରେ ।
ପ୍ରଜାଗଣେ ନିଜ ଅପତ୍ୟ ସମାନ
ପାଳୁଥାନ୍ତି ନରନାଥ
ଅହିଂସା ପଥିକ ଥିଲେ ନରଶିଖ
ସର୍ବେ ହୁଅନ୍ତ ତୃପତ ।
ଆଧ୍ୟାତ୍ମିକ-ଚିନ୍ତା- ପ୍ରବୀଣ ସଜନ
ଧର୍ମାର୍ଥିକେ ଥାନ୍ତି ସୁଖେ
ପରଦୁଃଖେ ଦୁଃଖୀ ସେ ରହି ନିରତେ
ପ୍ରଶଂସା ଲଭନ୍ତି ଲୋକେ ।
ଧନେ ସେ କୁବେର ବଳେ ୧ପୁରନ୍ଦର
ସମ ପ୍ରତାପ୍ରମବନ୍ତ
ଅପୂର୍ବିକ ଯେଣୁ ପ୍ରାଣାନ୍ତେ ୨ନିରୟ-
ଯାତନା ମାନସେ ବ୍ୟସ୍ତ ।
ସକଳ ବିଭୂତ ତୁଚ୍ଛ ଯେଣେ ମତ
(ସେ) ରହନ୍ତି ସଦା ସନ୍ତୃପ୍ତ
ଉଦ୍ଦେଶେ ଦାନ- ଧର୍ମ ଆଚରଣ
କରୁଥାନ୍ତି ସେ ବହୁତ ।
"କର୍ମ ଫଳ କେବେ ଆନ ନୁହେ ଲଭେ
ଘୁରାଏ ସବୁର ମନ

---

୧ ଇନ୍ଦ୍ର, ୨ ନରକ

ଧନ ଥିଲ ଜନ ଦୁଃଖେ କାଟେ ଦିନ
କେବେହେଁ ନୋହି ପ୍ରସନ୍ନ"।
ଉତ୍ତରାଧିକାରୀ ନଥାଇ ରାଜାଙ୍କ
ଅସନ୍ତୋଷ କୀଟ ହୃଦେ
ପ୍ରବେଶ କରଣି ଛାଟେ ଅନୁକ୍ଷଣି
ନିରତେ ରଖେ ବିଷାଦେ।
"ଧନ ଥିବା ଜନ ସନ୍ତାନ ବିହୀନ
ଧନ-ହୀନ ବହୁସୁତେ
ଲଭନ୍ତି ସଂସାରେ ରହନ୍ତି ଖେଦରେ
ଉଭୟେ ଏକଇ ମତେ"।
ବିଶ୍ୱ ସୃଷ୍ଟି ମାୟା ନୁହେ କଳମାୟା
ଅଜ୍ଞାତେ ରହେ କାରଣ
ମାୟା ୧ବିଭୀଷିକା ସୁଖ, ଦୁଃଖ ଦୁହେଁ
ଯୋଡି ରହନ୍ତି ସମାନ।
ଦୁଃଖ ପରେ ସୁଖ ସୁଖ ପରେ ଦୁଃଖ
ଭୋଗିବା ମାନ ନିୟତ
ସେ ହେତୁ ସୁଜ୍ଞାନ ଉଭୟେ ସମାନ
ଭାବେ ଦେଉଥାନ୍ତି ଚିତ୍ତ।
ମୋହ ବଶୁଁ ଭୀମ ନନ୍ଦନ କାମନା
ଜଡ଼ିତ ହୃଦେ ରହନ୍ତି
ଅତିଥି ସତ୍କାର କରନ୍ତି ପ୍ରଚୁର
କେବେ ବିମୁଖ ନୁହନ୍ତି।

---

୧ ଭୟପ୍ରଦର୍ଶନ

ଦମନ ନାମକ ଜଣେ ତପୀଶିଖ
ହେଲେ ଧନେ ଉପଗତ
ଯଥାଯୋଗ୍ୟ ପୂଜା ତାଙ୍କୁ କଲେ ରାଜା
ମନେ ହୋଇ ଅନନ୍ଦତ ।

ରାଜନ-ବଦନେ ବିଷାଦ-କାଳିମା
ଦେଖି ନେଇ ମୁନୀଶ୍ୱର
ପ୍ରଶ୍ନେ ସେ ଜାଣିଲେ ପ୍ରସାଭବ ବଶେ
ଯୋଡ଼େ କାଠନ୍ତ ବାସର ।

ପ୍ରଦାନଲେ ବର ଅଚରେ ସନ୍ତାନ
ଜନମିବେ ରାଜାଙ୍କର
ଏକ ସୁତା ତନି କୁମର ଜନମି
ହେବେ ବିଦର୍ଭାଳଙ୍କାର ।

କନ୍ୟା-ଜ୍ୟେଷ୍ଠା ନାମ ହେଲା ଦମୟନ୍ତୀ
ସେହୁ ସେ କାବ୍ୟ ନାୟିକା
ତାଙ୍କ ଗୁଣଗାନେ ମୁଁ ରହେ ତତ୍ପର
କୁମରେ କରେ ଉପେକ୍ଷା ।

ପିତା, ମାତା, ଅଣା ଅନୁରୂପା ସୁତା
ହେଲେ ଦମୟନ୍ତୀ ଦେଈ
ରାଜନ ଦମ୍ପତ ବହୁ ସ୍ନେହ ପାର୍ଶ୍ୱୀ
ଙ୍କର ନେଲେ ତାହାଙ୍କୁହି ।

ଦେବୀ ପ୍ରତମୂର୍ତ୍ତି ତାହାଙ୍କୁ ଭାବନ୍ତ
ସଦା ରଖନ୍ତ ପାରୁଶେ

ବେଳେ ବେଳେ ବୁଦ୍ଧି ନାଅନ୍ତି ପରଖି
ବିବିଧ ତର୍କଣା ବଶେ ।
ସ୍ୱପାଶୁଁ ବିଭିନ୍ନ କରଣେ ବିମନା
ହୋଇ ରାଜା-ରାଣୀ ଯୁତ
କେମା ଦମୟନ୍ତୀ ଶିକ୍ଷୟିତ୍ରୀ ସମା
ଜନନୀ ହେଲେ ନିଯୁକ୍ତ ।
ଶୈଶବୁଁ ନନ୍ଦନା ସ୍ୱକୋଳେ ରକ୍ଷିଣ
ଜନନୀ କଥା ପ୍ରସଙ୍ଗେ
ନୀତିମୟ ଗଳ୍ପ ପୁରାଣ ଚରିତ
ଶିଖାନ୍ତି ତ ଅନୁରାଗେ ।
ସୁଚତୁର ରାଣୀ ବିବିଧ କାହାଣୀ
ଛଳେ ଦେଲେ ନୀତି ଶିକ୍ଷା
ଉପଦେଶ କାଳ ଦମୟନ୍ତୀ ତୁଳ
କଲେ ୧ସ୍ୱୁତ ଦେଶେ ଦୀକ୍ଷା ।
"ନୀର ଲଭି ଯଥା ବଢ଼ନ୍ତି ପାଦପେ"
ତଥା ଗୁଣେ ଦମୟନ୍ତୀ
କାଳକ୍ରମେ ପୂରି ରହିଲେ ଗର୍ଭିତ-
୨ନୀଳାମ୍ବୁକୁ ନେଇ ଜିତି ।
ନୀତି ବିଶାରଦା କଲେ ସେ ନନ୍ଦନା
ହୃଦ (ହେଲ) ତାଙ୍କ ଗୁଣପୂର୍ଣ୍ଣା
ପୂର୍ଣ୍ଣ ଶଶୀ ପ୍ରାୟ ସେ ହେଲେ ବିକାଶ
ତେଣୁ ସେ ଜଗନ୍ମୋହନା ।

---

୧ ସ୍ୱରଣଶଙ୍ଖ, ୨ ସମୁଦ୍ର

ବହୁ ସତୀ-ନାରୀ ଗାଥା ଶୁଣି ତାଙ୍କ
ମତି ହେଲା ବଡ଼ ଠାଣି
ଯେମନ୍ତ-କନକ ରସାଣେ ବର୍ଦ୍ଧିତ
ହୁଏ ତାର ତେଜ ଗୁଣ ।
"ସଂସର୍ଗ ଅବର ୧ସୁ-ଅନୁଶୀଳନ
କରେ ଚରିତ୍ର ଗଠନ"
ଯେ ହେତୁ ତନୟ ଥିଲେ ସ୍ୱଚ୍ଛମୟ
ବଢ଼ିଲା ଜେମା ସଦ୍‌ଜ୍ଞାନ ।
"ବୁଦ୍ଧି ବଳ ଯାର ଜ୍ଞାନ ବଳୀୟାର
ହୁଅଇ ତାହାର ସିନା
କେଶରୀ ପ୍ରସାଦେ ୨ଅଜା ଯଥା ମୁଦେ
କ୍ରୀଡ଼େ ଗଜ ଶିରେ କିନା" ।
ସର୍ବାଂଶରେ ଯେଣୁ ସୁଗୁଣେ ଭରତ
ଥିଲେ ଜେମା ଦମୟନ୍ତୀ
ତାଙ୍କ ସମକକ୍ଷ ହେବାକୁ କେ ଲକ୍ଷ
ନ କରେ ଆନ ଯୁବତୀ ।
ଅନଳେ ଦହନ ଶସ୍ତ୍ରେ ପ୍ରହାରଣ
କଲେ ଯେ ଲୌହ ୩ଇସ୍ପାତେ
ବଦଳେ ଯେମନ୍ତ ଶାସ୍ତ୍ର, ରସା ଜ୍ଞାନ
ଶିକ୍ଷାରୁ ହେଲା ସେ ମତେ ।
ଚତୁର, କୋମଳା- ବାଳା ବୁଦ୍ଧିବଳେ
ହୋଇଲେ ସୁଗୁଣବତୀ

---

୧ ଆଲୋଚନା, ୨ ଛେଳି, ୩ ଅଙ୍ଗାରିତ

ପୂର୍ଣ୍ଣ କୁଟଳ ତାଠା     ଗୁଣୀ ଫବେଷ୍ଟିଡା
କପାଁ ହୋଇବେ ଦୁର୍ମତ ?
ସତୀ ପ୍ରାଣେ ପ୍ରାଣ     କଲେ ଫଗଠନ
ଧୈର୍ଯ୍ୟ, ସ୍ଥୈର୍ଯ୍ୟ ଆଦ୍ୟ ଗୁଣ
ମାତା ତହୁଁ ଅନୁ-     କରଣ କରଣ
ଦୃଢ଼ କଲେ ତାଙ୍କ ମନ ।
ତନେ ଦେଖି ନେଇ     ସୁଗୁଣ ସମ୍ପନ୍ନା
ସୁଲକ୍ଷଣା ହେମା ମୂର୍ତ୍ତି
କରନ୍ତି ଭାବନା     ସାଗର-ଜନମା
ରମା ବଳେ ବସୁମତୀ ।
ଯଥା କାଳେ ଆସି     ଯୌବନ ନରେଶ
ତାଙ୍କ କଲ ଅନ୍ଧମଣ
ବଧାତା ନିର୍ମାଣେ     ଦେଖି ନେଇ ଖ୍ଣ
କରିଲ୍ଭ ନୂଠି ପୁରଣ ।
କନକ-ବଲ୍ଲିସ     ସମ ସେ ବଢ଼ନ୍ତି
ବଢ଼ାଇଲ ବଣାଲତା
ଭାବ, ହାବ, ଲଜ୍ଜା     ୧ମାର୍ଦବ ପ୍ରମୂରେ
୨ବତାନ ରଚେ ଶୋଭତା ।
କୁସୁମିତ-ଡାଳ     ଜାଣିଣ କୁସୁମ-
ଗୁଚ୍ଛ ରଖେ ବକ୍ଷଦେଶେ
ପବନା ନବୀନା     ପବନ ଚରନ
ପ୍ରସାରଣେ ସୁମ ବଶେ ।

---

୧ ମୃଦୁତ୍ୱ, ୨ ଚୃନ୍ଦୁଆ

୧ରଙ୍ଗାଜୀବ ସମ ଅଧର ଲପନ
ରଙ୍ଗିଲ ୨ତୁଲିକା ଧରି
ରଦନ, ଅବର କଲି ସୃଷ୍ଟିତରି
ମୌକ୍ତିକ ଅଭ୍ର ସୁମରି ।
୩ଖଞ୍ଜନ-ଈକ୍ଷଣେ କଟାକ୍ଷ ୪ଅଶୁଗ
ଯୋଡଦେଲି ପ୍ରୀତି ଭରେ
ରତ୍ନ-ଭୂଷା ଯୁତେ କଲି ଶୋଭାବତୀ
ଅଗତ ହୃତ ଚତ୍ୱାରେ ।
ବର-ନାରୀ ଜନ୍ମ ସାଫଲ୍ୟ କରଣେ
ସାରଲ୍ୟ ଯେ ୫ଅଙ୍ଗରାଗ
ସର୍ବାଙ୍ଗେ ଲେପିଣ ଦ୍ୟୁତି ବଢ଼ାଇଣ
ମାଟିଲି ବନ୍ଧୁ ସରାଗ ।
୬କୁମୁଦ-ବାନ୍ଧବ- ମୁଖ ଯେ ଚକୋର
ନୟନ ଦେଖି (ରହେ) ପ୍ରଫୁଲ୍ଲ
୭ଧରେଶ୍ୱର-ବର ମନ ଆକର୍ଷଣେ
ଚୁମ୍ବକ ସେ ଅବିକଳ ।
୮କୋଦଣ୍ଡ ଆକାର ସମାନ ଭ୍ରୂଲତା
ଶରଜାଲେ ଯୋଗ୍ୟ ରହେ
ଶୁର, ବୀରବର ହେବେ ରମା-ବର
ଅଭ୍ରାସ ବା ସେହୁ ଦଏ ।

---

୧ ଚନ୍ଦ୍ରକାର, ୨ ରଙ୍ଗିବାକାଠି, ୩ କଜ୍ଜ୍ୱଳପାତି ପକ୍ଷୀ, ୪ ଶର, ୫ ଅଙ୍ଗେ ଲେପିବା ଦ୍ରବ୍ୟ ଯଥା ହଳଦୀ, ଚନ୍ଦନ, ୬ ଚନ୍ଦ୍ର, ୭ ରାଜାଶ୍ରେଷ୍ଠ, ୮ ଧନୁ

ପକ୍ୱ ୧ବିମ୍ବାଧର ଲୋଭେ ନାସା କୀର
ଦୌଡ଼େ କି ହୋଇ ପ୍ରଖର
ଅଗ୍ରେ ରତ୍ନ ଭୂଷା ବହନେ ସହସା
ହେଲ ତା' ଅକାଂକ୍ଷା ଦୂର ।
ଲଲାଟ ରାଜଇ ଖେଳା-ପାଲ୍ ପର
ଚୂର୍ଣ୍ଣ-କୁନ୍ତଳ-ପଦାଙ୍କ
ଖେଳି ବସେ ତହିଁ ଦର୍ଶକ ହୃଦର
ନେବାକୁ କର ବିବେକ ।
ଶୃଙ୍ଖ କଣ୍ଠ ଦେଖି କମ୍ବୁ ହୋଇ ଦୁଃଖୀ
ଉଚ୍ଛିଷ୍ଟ ହେଲ ଅନରେ
ହୀନ ମୁଖେ ପଡ଼ି ୨ନିଷ୍ଠୀବନେ ପୂରି
ରହିଲ ଭଁ ଭଁ ଡ଼ାକରେ ।
ବଦନ, ନୟନ ସୁଷମାକୁ ହାରି
କମଳ, ମୀନ ସରସେ
ଲୁଚିଲେ କହିଲେ ଅପଥା ନ ହେବ
ସେ ଭାବ ଖେଳେ ମାନସେ ।
୩ମୃଣାଳକୁ ଜିଣି ଦଶେ ବାହୁ ଦ୍ୱୟ
ବିବିଧ ଭୂଷା ମଣ୍ଡିତ
ଦରଶନେ ତାହା ହୁଅଇ ଚଳନା
ପଦ୍ମା ପଦ୍ମେ ତ ଅସକ୍ତ ।
ମୃଗ ଦୃଶା ଗଜେ- ସିଂହେ ପରାଜିତ
କରନ୍ତୁ ବସେ ୪ନିତମ୍ବେ

୧ ପାଚିଲ ତୋରଡ଼ା, ୨ ଛେପ, ୩ ପଦ୍ମନାଡ଼, ୪ କଟୀଦେଶେ

ମୋହନ-ଅଙ୍ଗାର- ରମଣୀ ଦର୍ଶନେ
ମୋହିତ ହେବେ ସରବେ ।
କରାଙ୍ଗୁଳି ଜଣେ ଚମ୍ପକ ୧କୋରକ
ତେଣୁ ଚମ୍ପକ ୨ଜଞ୍ଜିକେ
ନରହ୍ମ ନଗରେ ରମଣୀ ଅଗରେ
ଲୁଚି ଗଲେ ବନ-ରାଜ୍ୟ ।
ଭଲ୍ଃ ୩ରମ୍ଭାକୁ ବହେ କା ଅଦରେ
ଜାନୁ-ଯୁଗଳ ତାଙ୍କର
ଶୁଭ କର୍ମେ ତରୁ ପ୍ରଶସ୍ତ ହେବାରୁ
କେମା କଲେ ତା ଅଦର ।
ନାୟକ, ନାୟିକା ବର୍ଣ୍ଣନା କରାଯୁ
ବଢ଼ାଇବେ ଭାବ୍ୟ ରୁଚି
ହୋଇ ମୁଁ ୪ବାମୁଷ୍ୟ- କାଗ୍ୟ କୟୁଦ୍ଧଂଶ
ବର୍ଣ୍ଣିଲି ଏଠାରେ ବାଛୁ ।
୫ଅଭ୍ରଂକଷ ୬ସୌଧେ ଅବଦ୍ଧ ରହନ୍ତି
ହୋଇଣ ୭ଅସୂର୍ଯ୍ୟଂପଶ୍ୟା
ସୁରମ୍ୟା ରମଣୀ ସହଚରୀ ଶ୍ରେଣୀ
କରନ୍ତି ତାଙ୍କ ଶୁଶ୍ରୂଷା ।
ଉନ୍ନତ ଯୌବନ- ଦେବେ ଅକର୍ଷିତ
ହେବାରୁ ଯୁବତୀ ବର

---

୧ କଢ଼ି, ୨ ବୃନ୍ତ, ୩ କଦଳୀତରୁ, ୪ ଯେ ବରୁଣା କର କାର୍ଯ୍ୟ କରେ, ୫ ଅକାଶସ୍ପର୍ଶୀ, ୬ ଅଟ୍ଟାଳିକା, ୭ ଯେ ସ୍ତ୍ରୀକୁ ସୂର୍ଯ୍ୟ ସୁଦ୍ଧା ଦେଖେ ନାହିଁ

ଲଜ୍ଜା-ଶୃଙ୍ଖଳେ ସେ ରହିଲେ ଅବଦ୍ଧା
୧ଅପ୍ରକାଶ୍ୟ-ବନ୍ଦୀ ପରି ।



## ପଞ୍ଚମ ସର୍ଗ

ଯୌବନ ସୁଲଭ ଗୁଣେ ହୋଇ ପୂର୍ଣ୍ଣ
ନବୀନା ହୃଦ ଗମ୍ଭୀର—
୨ରତ୍ନାକର ବତ ହେଲା ଯେ ନିସ୍ତବ୍ଧ
ପ୍ରେମ ରତ୍ନେ ଥିଲା ଭରି ।
ସୁବାସ-ସୁମନ ମୋହିତ କା'ମନ
କରିବ ସେ ଚିନ୍ତା ମନେ
ଜନନୀ, ଜନକ ରଖି ଅବିରତେ
ଲଗିଲେ ବର ସନ୍ଧାନେ ।
ଦମୟନ୍ତୀ ହୃଦ ହୋଇବେ ଅଚିର
ସହଚରୀ କରି ସ୍ଥିର
ହରଷ, ବିଷାଦ- ପୂର୍ଣ୍ଣେ ସ୍ୱ ସ୍ୱ ହୃଦ
ସର୍ବଦା ରଖନ୍ତି ଭରି ।
ସୁଗୁଣ ସମ୍ପନ୍ନା ଅବନୀ ମଣ୍ଡନା
ହୋଇବେ କା' ଗଳାହାର
ସେ ଚିନ୍ତା ସରବ ଗର୍ଭେ କରି ଠାବ
ସନ୍ତପ୍ତ କରେ ଅନ୍ତର ।
ବେଳେ ବେଳେ ଭୈମୀ ପ୍ରମୋଦ କରଣେ
ବହୁ ଦେଣ ସମାଗୁର

---

୧ ଅସ୍ପଷ୍ଟ, ୨ ସମୁଦ୍ର

ବିବୃତ କରଣ ବଦନୁଁ ନିଦାନ
ନିଅନ୍ତି ଭାବ ତାଙ୍କର ।
ହୃଦୟ କାନନେ ବସି ୧ତ୍ରପା-ମୃଗ
କରେ ତାଙ୍କୁ ନିରୁତ୍ତର
ପ୍ରବୀଣା ସଙ୍ଗିନୀ ମନୋଭାବ ଜାଣି
ମାତିବେ ରହସ୍ୟେ ପର ।
ଦମୟନ୍ତୀ ଧୀର ସମା ଧୀରା, ସ୍ଥିର
ରହନ୍ତି ଅଧୋବଦନେ ।
୨ଉଚିତାନୁଚିତ କରଣ ତର୍କଣା
ଭାବ ରଖନ୍ତି ଗୋପନେ ।
ଦିନେ ଏକ ସହ- ଚରୀ ସୁଚତୁରୀ
ଶୁଣି ଦୀନେ ନଳ ଗୁଣ
କଲା ତା ବ୍ୟାଖ୍ୟାନ ହୋଇଣି ତତ୍ପର
ଜମିଲେ ସଙ୍ଗିନୀଗଣ ।
ଦମୟନ୍ତୀ ମୁଖ କର ନେଇ ବକ୍ଷ
ଶୁଣିଲେ ଅମୂଳ-ଚୂଳ
୩ଅସେୟ ଜଣାଇଲେ ସହଚରୀକୁଳେ
ନୁହନ୍ତି ସେ ବାତ୍ୟା-ଭୋଳ ।
ଗୁଣୀ ନରପତି ଗୁଣ ରାଶି ଶୁଣି
ପ୍ରେମାତୁର ପରନ୍ତପା
ଅନ୍ତରେ ଥିଲେହେଁ ଦେଖାନ୍ତି ବାହାରେ
ନ ଥିଲେ ସେ ଅନୁରକ୍ତା ।

---

୧ ଲଜ୍ଜା, ୨ ଯୋଗ୍ୟାଯୋଗ୍ୟ, ୩ ଭଙ୍ଗିରେ।

"ମନେ ତୋଷ ଥିଲେ ହେଲେ ଲଜ୍ଜା ବଶେ
ସେ ଗୁଣ ନୁହେ ବିକାଶ"
୧ପିତେ କଟୂଯୁକ୍ତ ହେଲେ ତ ଅବଶ୍ୟ
ଶର୍କରା ଆଦର ହ୍ରାସ ।
ଲଜ୍ଜାଶୀଳା ଯେଣୁ ରମଣୀ ରତନ
ମନୋବୃତ୍ତି ଅବ୍ୟକତ (ରହେ)
"ପେଟିକା ଅବନ୍ଧ ଥିଲେ କେ ରତନ
କଦା ହୁଏ ଦୃଷ୍ଟିଗତ ?"
"ଲଜ୍ଜାହୀନ-ଜନ ଅସଦାଚରଣେ
କରେ ପିନା ବ୍ୟଭିଚାର
ଲଜ୍ଜାର ବିକାଶେ ଇନ୍ଦ୍ରିୟ ଲାଳସା
ଶମ୍ବରୁଁ ହୁଏ ଅନ୍ତର ।
ଲଜ୍ଜା ବସ୍ତ୍ରୁଁ ପିନା ଅଚ୍ଛାଦନ-ବାସେ
ଲୋଡ଼ି ବସୁଥାନ୍ତି ଜନେ
ସେ ହେଲେ ବିଲୟ ବାସେ କା'ର ଲୟ
ନଥାଇ ରଖନ୍ତା ନଗ୍ନେ" ।
ନଳ ଭୀବ ଅନୁ- ଶୀଳନେ ନୈଷଧେ
ଚରିତ ନୁଏ ଏଷଣି
କ ପ୍ରାପ୍ୟ ଦିବସ କାଠନ୍ତ ନରେଶ
ଜାଣିବା ମାନସେ ପୁଣି ।
ଗାର୍ହସ୍ଥ୍ୟ ଜୀବନ ସେ ଅନୁଭବନେ
ମାନସେ ବଢ଼ାନ୍ତି ଶ୍ରଦ୍ଧା

---

୧ ସାକରେ

ଅନୁକ୍ଷଣେ କାନ୍ତା- ଚିନ୍ତା ମନାସନେ
ବସି ଦିଏ ନାନା ବାଧା ।
ହୋଇ ସେ ¹ବିବିକ୍ତ- ସେବୀ ଦିବାନିଶି
ଈଶ୍ୱରେ ସମର୍ପି ମତି
ଲଜ୍ଜା-ଭରେ ମନୋ- ବେଦନା କାହାରେ
ପ୍ରକାଶ ସେ ନ କରନ୍ତି ।
ଚିନ୍ତା ପୁରି ଶର ନିକ୍ଷେପେ ଅପାର
ଯନ୍ତ୍ରଣା ପ୍ରବେଶି ମନେ
²ନିଭୃତ ³ପ୍ରକୋଷ୍ଠେ ନିବାସ କାମନା
ମଣିଲେ ହିତ-ସାଧନେ ।
⁴ପୁରୋପାନ୍ତେ ରହେ କ୍ରୀଡ଼ନ-ଆବାସ
ଥିଲ ସେହି ସୁସଜ୍ଜିତ
ବିଶ୍ରାମୋପଯୋଗୀ ସ୍ଥାନ ବୋଲି ସେହି
ନୃପ ବଳାଇଲେ ଚିତ୍ତ ।
"ଚିନ୍ତା ବିନାଶନେ ମନ ପ୍ରବର୍ତ୍ତନ
ଅଟଇ ଯେ ମହୌଷଧି"
ନଳ ତା ଅଗ୍ରସ୍ଥ ନେବା ସୁସମସ୍ତ
ଚିନ୍ତା ବିନାଶନେ ବିଧି ।
ସଉଧେ ନିବାସ ସୁଖାଦ୍ୟ, ବିଳାସ
ମଣିଲେ ଅହିତକର
ଜନ ସମାଗମେ ମନ ହେଲେ ନ୍ୟୂନ
ଏକାକୀ ରହିଲେ ସ୍ଥିର ।

---

୧ ଏକାନ୍ତସେବୀ, ୨ ଗୋପନ, ୩ ବଖରା, ୪ ପୁରନିକଟେ,

୧ଉପବନଣ୍ଠ ତୀର ଏକ ସରୋବର
ସ୍ୱଚ୍ଛ ନୀରେ ରହେ ଭରି
୨କୁମୁଦ, ୩କହ୍ଲାର ନୀଳୋତ୍ପଳ ଦଳ
ବକ୍ଷେ ସେ ନିଅଇ ଧରି ।
ଉପବନ ରହେ ବିବିଧ ସୁମନେ
ଭୃଙ୍ଗଦଳ ଆମନ୍ତ୍ରି
କାହିଁ ଶ୍ୱେତ, ପୀତ, କାହିଁ ବା ଲୋହିତ
ବର୍ଣ୍ଣ-ପୁଷ୍ପେ ମନ ମୋହି ।
କାହାର ମୁକୁଳ ମୁକୁଟ ପ୍ରକାର
ଦିଶୁଥାଏ ମନୋହର
ଯୁବା-ଜନ ମନ ମୋହନେ ନିଦାନ
ଜନମ ଅଟେ ତାହାର ।
କାହିଁ ମୋତି ହାର ପରାଏ ସୁନ୍ଦର
ପୁଷ୍ପ ହାରାବଳୀ ଖେଳେ
ନବୀନ ବୟସ୍କା ନାଗରୀ ମାନସ
ହରିବାକୁ ଅବିରଳେ ।
ପୁଷ୍ପବାଟୀ ପାଖେ କଣଲଯୁ ପୂର୍ଣ୍ଣ
ତମାଳ ତରୁ ବିରାଜେ
ଘନ-ଆଗମନ ଭ୍ରାନ୍ତିକୁ ବହନ
ମୃତକ ମାନସେ ଗୁଞ୍ଜେ ।
ଗୁଣଗ୍ରାହୀ ୪ଗନ୍ଧ- ବହ ତା ସୁଗନ୍ଧ
ପ୍ରସାରଇ ପୁରେ ପୁରେ

୧ ନିକଟ ସ୍ଥାନ, ୨ କଇଁ, ୩ ଶ୍ୱେତପଦ୍ମ, ୪ ପବନ

ସୁଗନ୍ଧ ପାଲଟେ ଘୀରଡ ଭଲଟେ
ଯେନେ ସ୍ୱଳ୍ପ ଅଶାରେ ।
"ସୁଗୁଣୀ ସୁଗୁଣ କରେ ପ୍ରସାରଡ
ଶପସ୍ୱିଡେ ବିପସ୍ୱିତ
ଫଳ ଉତ୍ପାଦନ କରଇ ନିଦାନ
ତାହା ହେଲ ପ୍ରକଟିତ" ।
ଚନ୍ତାଶୀଳ ମନ ସାନ୍ତ୍ୱନା କରଣେ
ସେହୁଟି ସୁଦବ୍ୟ ସ୍ଥାନ
ଭାବନେଇ ମନେ ନଳ ସେହୁ ସ୍ଥାନେ
କଲେ ଅସ୍ଥାୟୀ ଅସ୍ଥାନ ।
ଦୃଶ୍ୟ ବିମୋହିତ ଶୁଦ୍ଧ ବାୟୁଯୁତେ
ମୋହିଲ ନୃପ ମାନସ
ପ୍ରଭାତ ସମୟେ ଦନେ ସରକୂଳେ
ଜମା ହେଲେ ରାଜହଂସ ।
କନକ-ବରନ ଚଞ୍ଚୁ, ପକ୍ଷ, ହେମ
ଦଶନ୍ତି ଆଶ୍ଚର୍ଯ୍ୟ ଜୀବେ
ବ୍ରହ୍ମାଣ୍ଡ କରତା ବ୍ରହ୍ମାଙ୍କ ବାହନ
ଯେହେତୁ ପବିତ୍ର ଭବେ ।
ମନୋହର ଦୃଶ୍ୟ ଦେଖି ନରଈଶ
ଉତ୍ଫୁଲ୍ଲ ହୋଇଣ ମନେ
ହଂସ ଏକ ଧର ନେବା ମନସ୍କାମେ
ଲାଗିଲେ ୧ଅନୁଧାବନେ ।

---

୧ ପଶ୍ଚାତ୍ ଗମନ

ନଳ ଗତ ଦେଖି ପତତ୍ରୀ ସକଳେ
ଉଡ଼ିଗଲେ ଅନ୍ୟ ସ୍ଥାନ
ଗୋଟିଏ ତହିଁରୁ ନ ହୋଇଣ ସ୍ଥିରୁ
କଲା ସଧୀର ଗମନ ।
ସନ୍ତୁଷ୍ଟ ନୟନେ ଦେଖିଣ ରାଜନ
ନେଲେ ତାକୁ ଦୃଢ଼େ ଧରି
୧କାରୁଣିକ ସ୍ୱନ କରି ପକ୍ଷୀଗଣ
କହେ ଅହେ ଦଣ୍ଡଧାରୀ ।
ଜଳଜ ୨ମନ୍ଦରେ ଶ୍ରୀବା ଉନ୍ନତରେ
ବକ୍ର ପେଷେ ୩ମରୁତ୍ସ୍ଥାନ
୪ତାଚ୍ଛୀଲ୍ୟ ଭାବରେ ପରିତ୍ୟାଗ କରେ
୫ପଲ୍ୱଲେ ଲ୍ଲୁଣେ ନିଦାନ ।
କେଶରୀ କେବେ କି ମୂଷିକ ନାଶନେ
କରେ ବାରେ ଆକ୍ରମଣ
ନୀତ ୬ବ୍ୟପଦେଶୀ କଲେ ମହାଶୟ
ତବାଦର୍ଶ ନୀଚତମ ।
ମୋ ବିନାଶେ ଦୁଃଖୀ ହେବେ ପ୍ରିୟ ସଙ୍ଗୀ
ସୁଖୀ ହେବେ ମୋ ଅପ୍ରିୟ (ଜନେ)
ସେଥିକୁ ଶୋଚନା ନାହିଁ ମୋର କିନା
ମାତା ଶୋକେ ଦଏ ଲୟ ।
ମୋ ଜନମ କାଳୁଁ ସହି କଷ୍ଟ ଜାଲ
ପାଳିଲା ମୋତେ ଆଦରେ

---

୧ ଦୈନ୍ୟ, ୨ ପର୍ବତେ, ୩ ଇନ୍ଦ୍ର, ୪ ହେୟଜ୍ଞାନେ, ୫ ଗାଡ଼ିଆ, ୬ ବ୍ୟପଦେଶରେ

ବାର୍ଦ୍ଧକ୍ୟ ସମୟେ ମୋର ୧ଇହତ୍ୟାଗ
ଅସହ୍ୟ ତ ହେବ ତାରେ ।
ଶୁଣେ ମୁଁ ଆପଣ ସୁଗୁଣ ସମ୍ପନ୍ନ
ଦୟାଳୁ କୃପା-ସାଗର
ମୁଁ ହୀନ ପକ୍ଷୀ ନାଶନେ ଗୁମାନୀ
ହେଲେ ହେବ ନିନ୍ଦା ଘୋର ।
"ଚହନ୍ତି ପଣ୍ଡିତେ କ୍ଷମା ସଂଯୋଜିତେ
ଲୋକପ୍ରିୟ ବଳବାନ
ହୁଏ ମାତ୍ର କ୍ଷମା ବଳହୀନ ହୃଦୟ
ବହଇ ଯେ ବଳହୀନ" ।
ବ୍ରହ୍ମାଙ୍କ ପ୍ରସାଦୁଁ ମୁଁ ଜାଣଇ ସବୁ
ସର୍ବସ୍ଥଳେ ମୁଁ ବାହରେ
ସର୍ବଜ୍ଞ ପ୍ରକାର ଜାଣି ସମାଗ୍ର
ସଦୁପଦେଶ ଦିଅଇରେ ।
ମୁଁ ଦେବେ ପ୍ରେରିତ ସାଧି ତବ ହିତ
ଚଳିବ ମୋ ନିଜ ସ୍ଥାନେ
ଦ୍ୱେଷ ମୋରେ ଦୂର କର ନରବର
ହିତକାମୀ ମାନ ମନେ ।
ମନୋବୃତ୍ତି ତବ ଜାଣେ ମୁଁ ସକଳ
କାମ-ସଫଳ କରଣେ
କୃପାୟୁ ଯେ ବଳେ କହିବି ହେ ରାୟ
ନ ଭାବ ଅପର ମନେ ।

ମୁହିଁ ରାଜପୁରେ ମୋ ସ୍ୱାମୀଙ୍କ ତୁଲେ
ଫେରୁଥାଏ ¹ଅବିରତ
ସର୍ବ ସୁକୁମାର କୁମାରୀ ଚରିତ
ବ୍ୟାଖ୍ୟାନେ ମୁଁ ସମରଥ ।
ମାତ୍ର ତୁଚ୍ଛ ପକ୍ଷୀ ବୋଲି ମତେ ଦେଖି
ନ ଜାଅନ୍ତେ ନର-ଗଣ
ମୋହର ବିଶ୍ୱାସ ହେବ ହୃଦଗତ
ଭାଳେ ତହେ ସ୍ଥିରେ ଶୁଣ ।
ତପସ୍ୟା ନ ଦେଇ ବାଢ଼ିଲେ ସାମର୍ଥ୍ୟ
ହାସ୍ୟାସ୍ପଦ ମାତ୍ର ତାହା
ଅଳ୍ପକାଳେ ମୋର ଗୁଣ ପରିଚୟ
ଲଭିବ ହେ ନରନାହା ।
ଜଣାଏ ଏତେକ ମୁଁ ହିତକାରକ
ସରଳ ବିଶ୍ୱାସୀ ଦାସ
କାର୍ଯ୍ୟାବଳୀ ମୋର ହେବ ସ୍ପଷ୍ଟତର
ମାନସୁଁ ବରଜ ²ସନ୍ଦେହ ।
ଦେବ ବଳେ ମୋର ଅକଳଣା ବଳ
ହେଲେହେଁ ମୁଁ ପକ୍ଷୀ-ଜାତି
ତବ ମନୋଭାବ ଜାଣେ ମୁଁ ସକଳ
ସାଧିବି ନୋହି ବିଚ୍ୟୁତ ।
ପ୍ରେୟସୀ ଲାଳସା ତବ ହୃଦେ ବସା
ସୁଦୃଢ଼େ କରିଛି ଏବେ

¹ ସର୍ବଦା, ² ଶଙ୍କା

ସୁଯୋଗ୍ୟା ରମଣୀ ଅଛୁ ଯେ ଜନମି
ବଢ଼େ ସେ ବଦର୍ଭେ ଶୁଦ୍ଧେ ।
କୋମଳ, ମଞ୍ଜୁଳ[୧] କୋମଳ-କଳିକା[୨]
ବଧି ରଙ୍ଗି ଧାମ ପୁରେ
ତା' ଗୁଣ ପ୍ରକାଶି ତାହାଙ୍କୁ ବଖାଣି
ଦେଲେ ଏବେ ପ୍ରୀତଭରେ ।
[୩]ବଦ୍ୟୁଲ୍ଲତା ଆଭା ମହାଲକ୍ଷ୍ମୀ ଶୋଭା
ସେହି କରନ୍ତି ପରାସ୍ତ
ସୁଗୁଣ ସାଗରୀ ଯେଣୁ ହେମଗୋରୀ
ଦେବଯୋଗ୍ୟା ସେ ନିଶ୍ଚିତ ।
ତୁମ୍ଭେ ରୂପେ, ଗୁଣେ ତାଙ୍କ ସମପାତ୍ର
ମୁଁ କହଇ ନରମଣି
ଅନୁଜ୍ଞା ଲଭିଲେ ତାହାଙ୍କୁ ମନାଇଁ
କରାଇବ ତବ ରାଣୀ" ।
କାମ-ଦାବାନଳେ ନଳ ଦଗ୍ଧ-ଦେହ
[୪]ଅପର୍ଯ୍ୟାପ୍ତ ଦୁଃଖ ସହି
ନେଇଥିଲା ଯେଣୁ [୫]ବରଠ ଭାଷଣ-
ବାଦଧାରୀ କଲ ନାହିଁ ।
ଭାବିଲେ ଉଦ୍ଭଣ ସୁବାଙ୍କ [୬]ବହଗ
କଦା ନୁହେ ଦୃଷ୍ଟିଗତ
[୭]ପତତ୍ରୀ ଚରତ ଥିଲାରୁ ଅଜ୍ଞାତ
ସଂଶୟ ମନେ ଉଦିତ ।

---

୧ ସୁନ୍ଦର, ୨ କଢ଼ି, ୩ ବଜୁଳୀ
୪ ଅଶେଷ, ୫ ରାଜହଂସ, ୬ ପକ୍ଷୀ, ୭ ପକ୍ଷୀ

ହେବାରୁ ସେ ଥରେ ଭାବିଲେ ଚିତ୍ତରେ
ଅଜ୍ଞାତ ନୁହେ ବିଷୟ
ବିଶ୍ୱାସ ଭାଜନ ହୁଏ ସେ ନିଦାନ
ପୂର୍ଣ୍ଣ ପରୀକ୍ଷିତେ ମାନ ।
ହିତ-ଉପଦେଶ ବାକ୍ୟ ଅନୁଶ୍ରୁତ
ଯୋଗ୍ୟାଯୋଗ୍ୟ ବିଚାରଣା
ମାନସେ ପ୍ରବେଶି ଶ୍ରମ ଦେଲ୍ବ ବେଶି
(ତେଣୁ) କଲେ ବିବିଧ ତର୍କଣା ।
ସୂକ୍ଷ୍ମ ଅନୁସୂକ୍ଷ୍ମ ଅଲୋଚନା ପରେ
ମଣିଲେ ତାକୁ ବିଶ୍ୱାସୀ
ମନେ ତୋଷ ବାନ୍ଧି ଅଙ୍ଗୀକାର ଦେଇ
ବୋଲନ୍ତି ହିତ-ଲାଳସୀ ।
"ଯଥାଯୋଗ୍ୟ କର୍ମ କର ପକ୍ଷୀ-ରାଣ
ନାହିଁ ଉପଦେଶ ମୋର
ସୁଜ୍ଞାନୀ, ସୁଦକ୍ଷ- ୧ପ୍ରଣିଧେ ବିଶେଷ
କହିବି କିସ ଅବର ।
ଏତିକି ମାତର କରଇ ଗୋଚର
୨ପ୍ରତ୍ୟାବର୍ତ୍ତିନେ ତୁମ୍ଭର
ଜଗି ରହିଥିବି ଉତ୍କଣ୍ଠିତ ମନେ
ଶ୍ରବଣେ କେମା ଉତ୍ତର" ।
ଉଡ଼ିଯାଇ ହଂସ ମିଶିଣ ସ୍ୱଗୋଷ୍ଠେ
କହିଲ୍ବ ଚଳଣିତକ

---

୧ ବୁଝେ, ୨ ଫେରସ୍ତେ

ମନ ସମ୍ପୂର୍ଣ୍ଣରେ ଉଡ଼ିଲେ ସରବେ
ଭୀମ-ପୁରେ ରଖି ଲକ୍ଷ୍ୟ ।
ଯଥା କାଳେ ପୁରେ ହେଲେ ଉପଗତ
ଦେଖିନେଲେ ସରୋବର
ନଗର ଉପାନ୍ତେ ରହେ ବିଦ୍ୟମାନ
ସ୍ୱଚ୍ଛ ନୀରେ ସେହୁ ଭର ।
କ୍ରୀଡ଼ା କୌତୁକେ ମାତିଲେ ସେ ସବେ
ଦର୍ଶକେ ହେଲେ ମୋହିତ
କିୟତ୍‌କ୍ଷଣ ପରେ ଅସି ସର କୂଳେ
ଅଙ୍ଗ-ଶୁଶ୍ରୂଷେ ହେଲେ ରତ ।
୧ଗାତ୍ର-ପ୍ରକ୍ଷାଳନେ ସହଚରୀଗଣ
ସଙ୍ଗେ କେମା ଦମୟନ୍ତୀ
ସର-କୂଳେ ଅସି ଦେଖି ହଂସ, ହଂସୀ
ଧରିବା ଉପାୟ ଚିନ୍ତି (ନେଲେ) ।
ଗତି ତାଙ୍କ ମନୋ- ଭାବ ଜାଣିଥିଲା
ପକ୍ଷୀ ହେଲେ ୨ଇତସ୍ତତଃ
ଭଗ୍ନ ମନୋରଥା ହୋଇ ଯୁବତୀଏ
୩ଅନୁଧାବନ୍ତୁଁ (ହେଲେ) ବିରତ ।
ନଳ-ଦୂତ-ହଂସ ନ ହୋଇ ବିରସ
କରୁଥିଲା ମନ୍ଦଗତି
୪ଦ୍ରୁତ ଗତି କରି ଗଲେ ଦମୟନ୍ତୀ
ତା ପାଖେ ହେଲେ ତ୍ୱରିତ ।

୧ ସ୍ନାନାର୍ଥେ, ୨ ଏଣେତେଣେ, ୩ ଗୋଡ଼ାଇବାରୁ, ୪ ଶୀଘ୍ର

ହଂସ ଦେଖି ନେଲି   ଏକାକୀନୀ ସେହି
ଘଡ଼ିଲ ୧ଅନ୍ତୁଁ ତା' ଭୀତ
କୋମଳ ସୁସ୍ୱରେ   ନଳ ଚେଷ୍ଟାକୃତ
ବର୍ଣ୍ଣିନେଲା ବହୁ ପ୍ରୀତ ।
ଶୁଣି ତା' ବୃତ   ହେଲେ ଦମୟନ୍ତୀ
ଚିତ୍ର-ପଟେ କରି ଚିହ୍ନ
ମାନସେ ବସାଇ   ଦେଖିଲେ ଫିଟାଇ
ତାହାଙ୍କର ଅନ୍ତର୍ନେତ୍ର ।
ବିଶ୍ୱ ବିମୋହିତ   ରୂପେ ସେ ମୋହିତା
ହୋଇ ହେଲେ ହୃଷ୍ଟମନା
ଲଭିବେ ସେ ପତି   କାମନା ପୂରିବେ
ବିଶେଷେ କଲେ ବନ୍ଦନା ।
"ବିଧି ସୁବିଧାନ   ନ ହୁଏ ତ ଆନ
ଯେ ଯାର ସେ ନିଷ୍ଠେ ତାର
ରୂପ ସନ୍ଦର୍ଶନେ,   ସୁଗୁଣ ଶ୍ରବଣେ
ପ୍ରେମ ଜନମ ନିଜର ।
ହେଲେ ସେ ଉଦିତ   ଧ୍ୟାନ-ଶୀରେ ଯୁତ
ହେଲେ ବଡ଼େ ଅନୁପମେ
ସମୀପ, ଅନ୍ତର   ନ ରହେ ବିଶ୍ୱର
ଖେଳେ ସେହି ଅନ୍ୟ ଅନ୍ୟେ ।
କାନନେ ମୟୂର   ଗଗନେ ୨ମୁଦିର
ଯଥା ଏକ ଏକେ ମୋହ

---

୧ ହୃଦୟାନ୍ତୁ, ୨ ମେଘ

ପଦ୍ମିନୀ ୧ସରସେ ତପନ୨ ଆକାଶେ
ମିତ ବହନ୍ତି ଯେ ୩ସୁଧୀ ।
୪ଆଦିତ୍ୟ ଉଦିତେ କମଳ ବିକାଶେ
ପ୍ରେମ ବଢ଼ାଏ ମହତ୍ତ୍ୱ
୫ନୈକଟ୍ୟ, ଦୂରତା ନ ଲୋଡ଼ନ୍ତି ତଥା
ପ୍ରେମିକ, ପ୍ରେମିକା ଚିତ୍ତ" ।
ନଳ ନ ଚହ୍ନନ୍ତି ଜେମା ଦମୟନ୍ତୀ
ନ ଜାଣନ୍ତି ନଳେ ସେହୁ
ତଥାପି ଦୁହିଙ୍କୁ ପ୍ରେମ-ଡ଼ୋରି ବଳେ
ବାନ୍ଧିଲେ କୃପାଳୁ ବିହୁ ।
ବିଭୁ ନିଯୁମିତ ଅଟେ ଏ ଜଗତ
ନିୟାମକ ସେହୁ ପିନା
ନିଜେ ସେ ନକରି ଆନ ଜନ ଦ୍ୱାରି
ସିଦ୍ଧ କରନ୍ତି କାମନା ।
କାହିଁ ପୁରେ ଜେମା କାହିଁ ସେ ବଇଠ
ଅନ୍ୟୋନ୍ୟ ଅପରିଚିତ
ବିଶ୍ୱ-କୃପା-ଡ଼ୋରି ସୁଦୃଢ଼ ବନ୍ଧନେ
ଉଭୟେ ହେଲେ ସୁମିତ ।
ନୟନେ ନ ଦେଖି ମନ ପଟେ ଲେଖି
ରଖିଲେ ଦେଉଁ ବୃତ୍ତାନ୍ତ
କର୍ଣ୍ଣେନ୍ଦ୍ରିୟେ ଶୁଣି ଚରିତ ବର୍ଣ୍ଣନା
ରୂପ ଗଢ଼େ ଅନ୍ତର୍ନେତ୍ର ।

---

୧ ସରୋବରେ, ୨ ସୂର୍ଯ୍ୟ, ୩ ବିଦ୍ୱାନ, ୪ ସୂର୍ଯ୍ୟ, ୫ ନିକଟତା

ସମଗ୍ର ଚରିତା- ମୃତ ନଳଙ୍କର
କର୍ଣ୍ଣେ ପାନ କରି କେମା
ମନେ କଲେ ସ୍ଥିର ରୂପେ, ଗୁଣେ ସେହି
ତାଙ୍କ ଯୋଗ୍ୟପାତ୍ର ସିନା ।
ଉତ୍ତର ଦେବାକୁ ବିମୁଖିନୀ ହୋଇ
ମଉନେ ରହିଲେ ସେହି
ରାଜ-ହଂସ ମୁଖ ଦେଖି ସେ ସହସେ
ଦେଲେ ମାତ୍ର ପଦେ କହି ।
୧ଅର୍ଦ୍ଧାଙ୍ଗ-ଯୋଗ୍ୟା ମୁହିଁ ଅଟେ ବୋଲି
ନ ଭାବନ୍ତି ଯଦାକାଳେ
ତାହାଙ୍କ କରୁଣା ହେଲେ ମୁହିଁ ହୀନା
କୃତାର୍ଥ ହୋଇବି ବାରେ ।
ପୁଣ୍ୟ ନଦବରେ କହିବ ଅବର
ତାଙ୍କ ମୂର୍ତ୍ତି ହୃଦାସନେ
ଧରିଛୁ ଯୁବତୀ ଯେମନ୍ତ ୨ସାବିତ୍ରୀ
ରଖିଥିଲେ ୩ସତ୍ୟବାନେ ।
ନୈଷଧ ନଗରେ ବରଟ ପ୍ରବେଶି
କେମା ପ୍ରତ୍ୟୁତ୍ତର ନଳେ
ଜଣାଇ ସ୍ୱପୁରେ ଗମିଲ ସଧୀରେ
ଆକାଂକ୍ଷା ରଖି ସୁଫଳେ ।



---

୧ ସ୍ୱାମୀ ଉଦ୍ଦେଶ୍ୟେ ସ୍ତ୍ରୀ ବ୍ୟବହାର କରେ,
୨ ମହାସତୀ, ୩ ତାହାଙ୍କ ଗୃହସ୍ଥ

## ଷଷ୍ଠ ସର୍ଗ

ଉଦାର ନବୀନା ମନୋରଥ ବିନା
ଥିଲେ କଷ୍ଟେ ଭୂତ-କାଳେ
ନଳ ପ୍ରତିମୂର୍ତ୍ତି ହୃଦାସନେ ବସି
ଭଲ ୧ବିବର୍ତ୍ତି ସେ କାଳେ ।
ଦୁର୍ବୃତ୍ତ ମଦନ ଦେବାକୁ ୨କଦନ
ପ୍ରହାର ନେଇ ବିଶିଖ
ରାଜପୁତ୍ରୀକାଣେ କଲ ସେ ନିବାସ
ଦେଖେ ଜେମା ଦୁଃଖିତକ ।
କାନ୍ତ-ବିରହ ଚିନ୍ତା ହୋଇ ବା ଦୁରନ୍ତ-
ରାକ୍ଷସ ହୃଦ ଆସନେ
ଆସୀନ ହୋଇଣ ଗ୍ରୀଲ ଜେମାଙ୍କୁ
ତାର କଣ୍ଠୁଁ ବହ୍ନିନେ ।
ମୁମୂର୍ଷୁ ଅବସ୍ଥା ପ୍ରକାଶେ ତା' ଦଶା
ହୋଇ ବାହ୍ୟ ଜ୍ଞାନଦୋଷ
ହେବାରୁ ତାହାଙ୍କୁ ଶୁଆଇ ପଲଙ୍କେ
ମନେ ବାଢ଼େ ବହୁ ହ୍ରାସ ।
ଅଙ୍ଗ ପ୍ରତି ଅଙ୍ଗ ହୋଇଲେ ଅବଶ୍ୟ
ମୁଖ କଣ୍ଠ ହେଲେ ଶୁଷ୍କ
ପାଗଳିନୀ ସମ ବାତୁଳ ସେ ହୋଇ
ପ୍ରଳାପି ନେଲେ ଅନେକ ।
ଖାଦ୍ୟ, ପେୟ କାଳ ହେଲ ବ୍ୟତିକ୍ରମ
ଥିଲେ ଯେଣୁ ଭବ-ସରେ

---

୧ ଅନୁଦ୍ଧମ, ୨ ପୀଡ଼ନ

ନଳ ଗୁଣ, ରୂପ ହୋଇ ସ୍ମୃତିକୃତ
କ୍ଷୁଧା, ତୃଷା ସେ ନିବାରେ ।
ଦମୟନ୍ତୀ ତନୁ ବେଙ୍କ ବେଳ କ୍ଷୀଣ
ହେବାର ଦେଖି ସଙ୍ଗିନୀ
ରାଜମାତା ପାଖେ କରିଲେ ଜଣାଣ
ନନ୍ଦନା ଦୁଃଖ କାହାଣି ।
କ୍ରମେ କ୍ରମେ କ୍ଷୀଣା ହେବାରୁ ନନ୍ଦନା
ରାଜବୈଦ୍ୟ ଆମନ୍ତ୍ରିତ
ହୋଇଣ ଅଚିରେ ସୁବିଜ୍ଞର ଭରେ
କଲେ ଚିକିତ୍ସା ବହୁତ ।
ଚିକିତ୍ସା ସୁଫଳ ନୋହି ବୈଦ୍ୟଦଳ
ବିଷାଦ ମୁଖେ ଫେରିଲେ
ବହୁ ଧନ, ମାନ ଅର୍ଜନେ ସୁଯୋଗ
ବାଧିବଶୁଁ ହରାଇଲେ ।
ଧନ୍ୱନ୍ତରି ସମ ଅଭିଜ୍ଞ, ସୁଦକ୍ଷ
ରାଜବୈଦ୍ୟ ଅଣାଗଲେ
ଦମୟନ୍ତୀ ଜେମା ଚିକିତ୍ସା କରଣେ
ତାଙ୍କ କରେ ସମର୍ପିଲେ ।
ଚରକାଦ ଶାସ୍ତ୍ର- ଶିକ୍ଷା ବୈଦ୍ୟରାଜ
ମସ୍ତକେ ଥିଲା ପୂରିତ
ନାଡ଼ୀ ପରଖିଣ ରଖିଲେ ନିଦାନ
ରୋଗ ମାନ ଚିନ୍ତା-ଜାତ ।

୧ ଗଦା

ଅନୁଭବୀ ଯେଣୁ ରସା ଜ୍ଞାନ ତେଣୁ
ଥିଲା ତାଙ୍କ ପୂର୍ଣ୍ଣ ଭାବେ
ନବୀନ ବୟସ୍କା ବିଭବ ଶାଳନୀ
ନ ଥାନ୍ତି କିଛି ଅଭାବେ ।
ବୟସ୍ତୁ ନିଦାନ କଲେ ବା ରମଣୀ
ହୃଦେ ୧ପ୍ରଣୟୀ ଲାଳସା
ଜନମି ତାହାଙ୍କୁ ଦେଲା ସେ ଗତିକୁ
ରଖିଲା ତାଙ୍କୁ ଅବଶା ।
ବୈଦ୍ୟ ଶାସ୍ତ୍ର ମତେ ଔଷଧ ନିର୍ଣ୍ଣୀତ
ନ ଦେଖି ଭିଷକ-ରତ୍ନ
ରୋଗ ଉପଶମେ କୌଶଳ ଚନ୍ଦନେ
ମନେ ମନେ କଲେ ଯତ୍ନ ।
ଲୋକ-ମୁଖେ ନଳ ଗୁଣ, କୀର୍ତ୍ତିଜାଳ
ବିଦର୍ଭେ ହୁଏ ବିଖ୍ୟାତ
କେମା ପରିଣୟ ଯୋଗ୍ୟ ବୋଲି ସେହୁ
ଅବିକଳେ କଲେ ମତ ।
ବିଜ ଭକ୍ତ ବଶେ କହିଲେ ୨ନଳଦେ
ସେ ବ୍ୟାଧି ୩ଅପନୋଦନ
ସଙ୍ଗିନୀ ଫଳଦ ଆଶାରେ ନଳଦ
କଷାୟ ଦେଲେ ବହନ ।
ରୋଗ ଉପଶମ ନ ହୋଇ କିଞ୍ଚିତ
ସରବେ କଲା ବ୍ୟଥିତ

---

୧ ଅନୁରକ୍ତ ନାୟକ, ୨ ଉସିରବେଣା ମୂଳ, ଯେ ନଳକୁ ଦଏ, ୩ ଦୂରୀକରଣ

ଜ୍ଞାନୀବର ମନ୍ତ୍ରୀ ଡକାଇ ନୃପତି
କହିଲେ ପୂର୍ବ ଚରିତ ।
ଅବର କହିଲେ ଚକ୍ରଗ୍ରହ ମତେ
ନଳଦେ ତ୍ରୁଟିବ ରୋଗ
ସହଚର୍ଯ୍ୟ ଗଣ କଲେହେଁ ପାଳନ
ନ ହେଲା ତାହା ରୋଗଘ୍ନ ।
ହୃଦୟ-କେଦାରେ ପ୍ରେମ-ବୀଜ ବୁଣା
ହେବାରୁ ସମ ବୟସ୍ୟ
ଗୁଣୀ, ଭାଗ୍ୟବାନ ରାଜନ ଚନ୍ଦ୍ରଣ
ହୁଅନ୍ତି ସେ ଶସ୍ତେ କୃଶ ।
ସିଦ୍ଧାନ୍ତେ ପହଞ୍ଚି . କହିଲେ ଝଟିତି
ନଳଙ୍କୁ ଦେଲେ ନଳଦ
ହୋଇବ ନିଶ୍ଚିତ ବ୍ୟାକରଣ ମତେ
କରାଯାଉ ତଥା ବଧ ।
ଚନ୍ଦ୍ରଣ ନରେଶ ମନ୍ତ୍ରୀ ଉପଦେଶ
କରଣେ ହେଲେ ସମ୍ମତ
ଶବ୍ଦ ବ୍ୟାଖ୍ୟାନ ତାହାଙ୍କ ଶୁଣିଣ
ମଣିଲେ ସେ ତ ଯଥାର୍ଥ ।
ନୃପ, ମନ୍ତ୍ରୀ ଦୁଇ ଦାଣ୍ଡେ[୧] ବସୁର
(ଭଲେ) ଜେମା ସ୍ୱୟମ୍ବର ସ୍ଥିର
ତଦର୍ଥେ ସାମଗ୍ରୀ ସଂଗ୍ରହ କରଣେ
ରହିଲେ ହୋଇ ତତ୍ପର ।

---

୧ ମନ୍ତ୍ରଣାଗୃହେ

କ୍ଷିତି-ପତି ୧ଚୟ ଅତି ସମାଦରେ
ଆମନ୍ତ୍ରିଲେ ଯଥା ବିଧି
ନଳ ନୃପବରେ ସ୍ୱର୍ଣ୍ଣାକ୍ଷରେ ପତ୍ର
ଲେଖିଲେ ହୋଇ ପ୍ରମୋଦ ।
ବିଜ୍ଞ, ଯୋଗ୍ୟ ଦୂତ ହୋଇଲେ ପ୍ରେରିତ
ଧରି ଆମନ୍ତ୍ରଣ ପତ୍ର
ଦେଶ, କୁଳାଗ୍ରର ହେଲା ଅନୁଷ୍ଠିତ
ପ୍ରସ୍ଥାନେ ସେ ହେଲେ ରତ ।
ଦେବେ, ନରେ ଜାତି ଅସମାନ ଯୋଗୁଁ
ଦେବେ ନୋହୁ ଆମନ୍ତ୍ରିତ
ରହିବାର ସ୍ମୃତି ହେଲା ବୋଲି ରାଜା
ନ ଥିଲେ କଦା ବ୍ୟଥିତ ।
ନାରଦ ପ୍ରଚୁର କଲେ ସେ ଖବର
ଶୁଣିଲେ ସ୍ୱର୍ଗେ ଦେବେନ୍ଦ୍ର
ସେ କାଳେ ବରୁଣ, ବୈଶ୍ୱାନର, ଯମ
ଥିଲେ ଇନ୍ଦ୍ର ସଭାସଦ ।
ଦମୟନ୍ତୀ ଗୁଣ ୨ବୃନ୍ଦାରକଗଣେ
ସ୍ପଷ୍ଟେ ଥିଲା ତ ଗୋଚର
ସୁନ୍ଦରୀ, ସୁଗୁଣା- ଲଙ୍କୃତା ରମଣୀ
ଲଭେ ଦେବେ ତତପର ।
"ସୁବାସ କୁସୁମ ଆଘ୍ରାଣେ କା'ମନ
ହୋଇବ କେବେ ନ୍ୟୂନ

---

୧ ସମୂହ, ୨ ଦେବ

ନାସ୍ତିକଙ୍କ ନିଧି ନେବାକୁ ସମାଧି
ଲୋଭ କାଁ ନୁହେ ବର୍ଦ୍ଧନ ।
ପ୍ରଚୁର ଆହାର ଥିଲେହେଁ ତାହାର
ଘୃତ-ପକ୍ୱ ପିଷ୍ଟକରେ
ମନ ନ ବଳାଇ ହାତ ନ ବଢ଼ାଇ
ରହିବ କି ହେଲେ ବେଳେ ।
ମଳିନତା ଭଜି ଥିଲେ କି କାଞ୍ଚନ
ହୁଏ କା'ରେ ଅନାଦୃତ
ସୁଭାଗ୍ୟ ସମ୍ପନ୍ନ ହେଲେହେଁ କେ'ଜନ
ନ ବଢ଼ାଇବ ତା ହାତ ।"
ନୀତ କପେ ଚତୁ- ଷ୍ଟୟ ଦେବେ ଭ୍ରମେ
ମନେ ହେଲ ସ୍ତିମିତ
ମର-ପୁର ଦେଖି ରୂପ, ଗୁଣ ଧେନି
ଯିବେ ସ୍ୱୟମ୍ବର କ୍ଷେତ୍ର ।
ଦେବେ ନିମନ୍ତ୍ରଣ ହେଲ ଯେଉଁ ଦିନ
ହେଲ ଦେବେ ସମାଦର
ସ୍ୱଜନ ନ ଛୁଡ଼ି ପୃଥକ ନ ଲୋଡ଼ି
ଥିଲରୁ (ସେ) କ୍ଷମାପାତ୍ର ।
ଆମନ୍ତ୍ରଣ ପତ୍ର ନଳ ରାଜା ହାତେ
ପଡ଼ି ଆଣିଲ ଚମକ
ଭାବିଲେ ସୁରମ୍ୟା, ରମଣୀ ସତେକ
(ହେବେ) ତାହାଙ୍କ କଣ୍ଠେ ପଦକ ।

"ରମଣୀ ରତନ ଲଭିବା ସୁଦିନ
• କା' ଭାଗ୍ୟେ ହେଲେ ନାକଠ
ଘୂର୍ଣ୍ଣବାୟୁ ସମ ମନୋଭାବ ଗଣ
ଜନ୍ମାଇ ରଖେ ୧ପ୍ରହୃଷ୍ଟ" ।
ଯା' ପ୍ରେମ ଲାଳସୀ ହୋଇ ଦାବା ନାଶୀ
କଷ୍ଟେ ସେ କାଠାନ୍ତ ଦିନ
ତା ମୁଖ ଦର୍ଶନେ ତା ଅଙ୍ଗ ସ୍ପର୍ଶନେ
ଭରସା (ରଖେ) ମନେ ପ୍ରସନ୍ନ ।
ପ୍ରାଣ-ଧନ ମନ- ମୋହନ ସୁବେଶ
ବାଛୁ ନେଲେ ବାହୁ ପ୍ରୀତ
ଯୋଗ୍ୟ ବେଶ ଭୂଷା ସେ ଛାଡ଼ି କୋଷରୁ
ଦେଲେ ଓଇଲ୍ ସାରଥି ।
ନାଳେ ଯେଣୁ ଅଶ୍ୱ- ଶାସ୍ତ୍ରେ ସୁପ୍ରବୀଣ
ତ୍ୱରେ ୨ମନ୍ଦୁରା ପ୍ରବେଶି
ହସ୍ତ ଚତୁଷ୍ଟୟ ତହୁଁ ଫେଇ ନେଇ
ଅଣିଲେ ତାଙ୍କୁ ଅଶ୍ୱାସି ।
ପ୍ରଭାତେ ପ୍ରୟାଣ କଲେ ନରବ୍ରଣ
୩ଭବ-ପ୍ରାଣ-ଗତ ହୟେ
ପରାଜିତ କର ପଥେ ଯାନ୍ତ ଚଳ
ଲୟ ରଖି ରାଜା ଜୟେ ।
ମାର୍ଗେ ସେ ଦେଖିଲେ ଚଳେ ବ୍ୟୋମଯାନ
ସମକକ୍ଷ ଏକ ରଥ

---

୧ ପ୍ରଫୁଲ୍ଲ, ୨ ଅଶ୍ୱଶାଳା, ୩ ପବନ

ବିଶ୍ବ ବିମୋହନ ଗୁରୁ ଯୁବା ଯେନି
କରୁଥିଲା ଗତି ଦ୍ରୁତ ।
୧କଶାଘାତ ବିନେ ନିଜ ଅଶ୍ବ ଗୁଳି
ଭେଟିଲେ ସେ ଦିବ୍ୟ ଯାନେ
ତାଙ୍କ ପରିଚୟ ଲଭିବା କାରଣେ
ରତ ହେଲେ ସମ୍ଭାଷଣେ ।
ଇନ୍ଦ୍ର ନିଜ ପରି- ଚୟ ଦେଇ କହି
ଯମାଗ୍ନି ବରୁଣାଦିରେ
ଅଗତ ଯେ ନଳ ବୋଲିଣ ଜାଣିଲେ
ସର୍ବ ଲକ୍ଷ ସ୍ବୟମ୍ବରେ ।
ଦମୟନ୍ତୀ ଲଭି ଆଶା ବିପୁରିତ
ଅନ୍ୟୋନ୍ୟେ ଜାଣିଲେ ସ୍ଥିରେ
ନଳ ଯଥା ମାନ୍ୟ ଯେନି ଦେବଗଣେ
କୌଶଳ ଭିଆଇ ନେଲେ ।
କହିଲେ ଦେବେନ୍ଦ୍ର ହେ ନଳ ନୃପେନ୍ଦ୍ର
ତୁମ୍ଭେ ଅଟ ସତ୍ୟବାନ
ସତ୍ୟ ବ୍ରତ ପାଳ ନ ହୋଇ ବିକଳ
ଯେନି ଅମ୍ଭ ନିବେଦନ ।
ଅମ୍ଭ ଦୂତ ପଣେ ଦମୟନ୍ତୀ ପାଶେ
ଅଗେ ଚଳିବ ଅପଣ
ମନାଇବ ତାଙ୍କୁ ଗୁରୁ ଦେବୁଁ ଏକୁଁ
ବରନେବେ ସେ ନିଦାନ ।

---

୧ କୋରଡ଼ା

ନଳ ନେଲେ ଭୂବ ମେଘ ବିନା ପର୍ବ୍ବ୧
ହେଲ୍ଲ ବା ତେବେ ପତିତ
ଯା' ଙ୍କର ଗ୍ରହଣେ ସେ ଉତ୍ସୁକ ମନେ
ତାଙ୍କରେ ସେ ହେବେ ଦୃଢ ।
ବୋଇଲେ ହେ ଦେବ ମୋତେ ଜେମା ଭୂବ
ପ୍ରତ୍ୟାଖ୍ୟାନ ମୁଁ ଶୁଣେ
ଉପଯୋଗୀ ତେଣୁ କେମନ୍ତ ହୋଇବ
ଦେବଗଣ ଦୂତ ପଣେ ।
ଜେମା ମୁଖେ ଉପ- ହାସ କର ବାସ
ମତେ ଦେଖି ହୀନମତେ
ଅନାଦର ପାତ୍ର ମଣିବେ ନିଶ୍ଚିତ
ଅଧମେ ଗଣିବେ ମତେ ।
ମୋ କରେ ପତିତ ୨ନାଥି ମୁହିଁ ତ୍ୟକ୍ତ
କରଣେ କଲେ ପ୍ରସ୍ତାବ
ଅଯୋଗ୍ୟ ମୁକୁଟ- ମଣିରେ ନିପଟ
ଗଣିବେ ବିଶ୍ୱ-ମାନବ ।
ସ୍ପଷ୍ଟ ହେଲେ ହେଲେ ମୋ ଅବିବେକିତା
ଦେବାଜ୍ଞା ମୋ ଶିରଗ୍ରତେ
ବହୁନେବି ବୋଲି କରେ ମୁଁ ସ୍ୱୀକୃତ
ଦୈବୀବଳ ଦିଅ ମତେ ।
ମହାରାଜ ଜେମା ସୁଦୃଢ଼ ପ୍ରକୋଷ୍ଠେ
ବହୁ ନାରୀ ସନ୍ନିବେଷ୍ଟିତେ

୧ ବଜ୍ର, ୨ ରତ୍ନ

ରହିଥିବେ ଯେଣୁ　　　　　କପଟ ମୁଁ ତେଣୁ
ହାଜର ହେବ ପୂରତେ ।
ବହୁ ବୀର ସେନା　　　　　ସଶସ୍ତ୍ର ହୋଇଣ
ରହିଥିବେ ଜଗୁଥିଲେ
କେମନ୍ତ ଭିତରେ　　　　　ମୁଁ ହେବ ପ୍ରବେଶ
କହ କି ଉପାୟ ବଳେ ।
ଦେବରାଜା ତହୁଁ　　　　　ଦେଲେ ଦିବ୍ୟ ମନ୍ତ୍ର
ଯା' ବଳେ ହେବ ଅଦୃଶ୍ୟ
ପ୍ରବେଶ କରିବେ　　　　　ଭୈମୀ ନିଦ୍ରାଗାରେ
ଅତୀବ ଗୋପନ ବଶେ ।
ପଥେ ସେ ଭାବନ୍ତି　　　　　କିବା ଜଳାଞ୍ଜଳି
ଦେବେ ସେ ନିଜ କାମନା
ଅବା ଦୃଢ଼ ସତୀ-　　　　　ବରତ ପାଳନ
କରିବେ ଭୀମ ନନ୍ଦନା ।
ମନେ, ବଚନେ ସେ　　　　　ମତେ ବରିଛନ୍ତି
ଅନେ ମନ ସଂଯୋଜନା
କଲେ ନିଷ୍ଟେ ତାଙ୍କ　　　　　ସତୀତ୍ୱ-ରତନ
ଅପବିତ୍ର ହେବ ସିନା ।
ନାନା ବିଧ ଯୁକ୍ତି　　　　　ତର୍କ କରି କରି
ହେଲେ ସେ ରାଜପ୍ରାସାଦେ
ଦେବେନ୍ଦ୍ର ପ୍ରଦତ୍ତ　　　　　ମନ୍ତ୍ର ଉଚ୍ଚାରଣେ
ଭୈମୀ ପୁରେ ହେଲେ ମୁଦେ ।

ଦେଖିଲେ ଅସଂଖ୍ୟ ସହଚରୀ ବୃନ୍ଦ
ମଧ୍ୟେ ବିରାଜେ ନାରୀମଣି
୧ତାରାଳୀ ଯୁକତ ୨ରୋହିଣୀ ପ୍ରଭୃତି
ପ୍ରକାଶନ୍ତି ଅଭ୍ର ଶ୍ରେଣୀ ।
୩ନିଭୃତ ପ୍ରକୋଷ୍ଠେ ପୁରୁଷ ପ୍ରବେଶ
ରକ୍ଷକେ କଲେ ସଚେତ
ତେଣୁ ନଳ ଉପ- ଗତେ ଦାସୀକୁଳ
ଚେଇଁ ହେଲେ ଉତ୍କଣ୍ଠିତ ।
ଅଦ୍‌ଭୁତ ଦର୍ଶନେ ଭୟ ସର୍ବ ମନେ
ପ୍ରବେଶ କଲା ସେକ୍ଷଣି
ଯେ ଦେଖିଲେ ନଳେ ରହିଲେ ବାଦ୍ଧୁଲେ
ଦେଖି ତାଙ୍କ ବପୁ, ଠାଣି ।
କେ ଭାବେ ନଶ୍ୱର- ପୁରୁଷ ନୁହନ୍ତି
ସୁର-ପୁର କିଂପୁରୁଷ୪
କା' ମତେ ୫ପୁଷ୍ପେଷୁ ଅଗାରେ ପ୍ରବେଶ
କଲା ବହୁ ମନେ ତୋଷ ।
ପଲ୍ୟଙ୍କ ଶାୟିନୀ ଥିଲେ ଜେମାମଣି
ଉଠିଲେ ଚହଳ ଜାଣି
ଆଗତ ଦ୍ୟୁତରେ ଲକ୍ଷ୍ମିତ୍ର ଦେଖିଲେ
ପ୍ରକୋଷ୍ଠ ଅନେକ ଶ୍ରେଣୀ ।
ଅଭେଦ୍ୟ, ରକ୍ଷିତ ପୁରେ ଉପଗତ
ହୋଇଲେ କେଉଁ ଯୁବକ

---

୧ ତାରାସମୂହ, ୨ ଚନ୍ଦ୍ରଙ୍କ ପତ୍ନୀ, ୩ ଗୁପ୍ତ, ୪ କିନ୍ନର, ୫ କନ୍ଦର୍ପ

ତାଙ୍କ ଆଗମନ କାରଣ ନ ଜାଣି
ଯୁବତୀ ହେଲେ ବିମୁଖ ।
ଭାବିଲେ କି ଯୁବା ଯୁବତୀ-ନିହନ୍ତା-
ମନ୍ମଥ କଲେ ବିଜୟ
ସତୀବ୍ରତେ ତାଙ୍କ ପକାଇ କଣ୍ଟକ
ନାଶିବାକୁ ଧର୍ମ ଚୟ ।
କେଉଁ ସମ୍ବୋଧନ କି ଅଭିନନ୍ଦନ୧
କରିବେ ଭଲେ ବିଚାର
ସେ ଅଜ୍ଞାତ-କୁଳ- ଶୀଳ ଯୁବାବର
ବହନ୍ତି ଶିଷ୍ଟ ଆକାର ।
ବାହ୍ୟ ଜ୍ଞାନ ଶୂନ୍ୟ ହେଲ ତାହାଙ୍କର
ହେଲେ ନିତାନ୍ତ କାତର
ପରେ ସମାଦରେ କହିଲେ ହେ ବୀର
(ତବ) ପରିଚୟ ୨ଲିପ୍‌ସା ମୋର ।
ଅଣିଷ୍ଟ ଅଗୃର ନିଦାନ ନିଜର
ଅବଗତ ହୋଇ କ୍ଷୁବ୍ଧ
କ୍ଷମା ପ୍ରାର୍ଥୀ ହେଲେ ଯୋଡ଼କରେ ରହୁ
ବୋଇଲେ ନ କର କ୍ରୋଧ ।
ଦେବେନ୍ଦ୍ର, କୁବେର, ଯମ, ବୈଶ୍ୱାନର
ଆସୁଛନ୍ତି ଏକ ରଥେ
ତବ ପାଣି ଲୋଭେ ଅଛନ୍ତି ସେ ଦମ୍ଭେ
ପଠାଇଲେ ଦୂତେ ମତେ ।

---

୧ ସାଦର ଅଭ୍ୟର୍ଥନା, ୨ ଇଚ୍ଛା

ତାହାଙ୍କ ପ୍ରଦତ୍ତ ମନ୍ତ୍ର ବଳେ ମୂର୍ତ୍ତି
ଲଭିଲି ତବ ସାକ୍ଷାତ
ନିଶାର୍ଦ୍ଧେ ତୁମ୍ଭର [୧]ପ୍ରବେଶ ସମୟେ
ହେଲି ପୁରେ ଉପଗତ ।
ଗୃହକ ମଧ୍ୟରୁ ଜଣକୁ ବରଣ
କଲେ ପୂର୍ଣ୍ଣ ମନୋରଥ
ହେବେ ବୋଲି କହି ମତେ ସେ ପଠାଇ
ଦେଇଛନ୍ତି କହେ ସତ ।
ଯୁବା [୨]ଦ୍ୟୁତି ବିମୋହିତା ନାରୀବର୍ଗ
ରହିଲେ ହୋଇ ଚକିତ
ଭାବିଲେ କନକ- ମନ୍ଦର କି ଚାପେ
ଲୌହ ଉଦ୍‌ଗୀରଣେ ରତ ।
ପୀୟୂଷ [୩]ଦ୍ରୋଣିରୁ ଗରଳ [୪]ଝରିତ
ନଥିଲା ତ କାହିଁ ଦେଖା
ହୋଇଣ ଅସ୍ଥିର ସୁ-ସ୍ୱର ଯୁବତେ
କହିଲେ ନ କରି ଶଙ୍କା ।
ବୋଇଲେ ମୁଁ ବାରେ ବରିଅଛୁ ବୀର
ନିଷଧପୁର ଈଶ୍ୱରେ
ସେ [୫]ପଣୁଁ ଭୁମାଇ ନ ପାରନ୍ତି ନେଇ
ଠୁଳ ହୋଇ ସର୍ବ ସୁରେ ।
ସତୀ ତାର ବର ବାଛଇ ନିଜର
ପିତା, ମାତା ସହୋଦର

---

୧ ନିଦ୍ରା, ୨ ଶୋଭା, ୩ କୁଣ୍ଡ, ୪ ଝରିବା, ୫ ପ୍ରତିଜ୍ଞା

ମନ ପ୍ରବୃତ୍ତିନେ କେ ହେଲେ ସମର୍ଥ
ନ ହୋଇବେ ଏକ ବାର ।
"କି ଅବା ୧ପ୍ରତୀଚୀ ଦିଗରେ ୨ବାସର-
ଈଶ୍ୱର ହେଲେ ଉଦୟ
ସତୀ-ମନ-ଧନ ଲୁଣ୍ଠନେ ଭାଜନ
ନୋହିବ କେହି ନିଶ୍ଚୟ ।
ସତୀତ୍ୱ-ଭୂଷଣ- ତାର ସେ ୩ଭାଷଣ
ନଳ-ହୃଦେ ସୁଧାଧାର-
ପ୍ରତିକ ପ୍ରବାହ ଶୀତଳ ଜନ୍ମାଇ
(କଲା) ଶମ୍ବର-ତାପ ବିଦୂର ।
ବାହାରେ କହିଲେ ତେଜମା ! ଭାବ ଭଲେ
ଅପମାନି ଦେବ ବରେ
ଘର,ନର ନଳେ ବରିଲେ ନିଷ୍କର
ନିନ୍ଦିବେ ଜଗତ ନରେ ।
ଆବର କହିଲେ ଶୁଣି ମନ ଦେଇ
ଅନିଷ୍ଟ ସେ ଉଅଇବେ
ତବ-ପୁର ନାଶି ସ୍ୱଜନ ବିନାଶି
ଉଦ୍ୱାସ୍ତୁ କ୍ଲେଶ ସର୍ଜିବେ ।
ପିତା, ମାତା, ଗୁରୁ- ଜନେ ହୋଇ ଭୀରୁ
ନିଷ୍ଟେ ଦେବେ ଦେବ କରେ
ପରିଣାମ ଫଳ ହେବ ଘୋରଙ୍କାର
କର ସୁବିଚାର ସ୍ଥିରେ ।"

---

୧ ପଶ୍ଚିମଦିଗ, ୨ ସୂର୍ଯ୍ୟ, ୩ କଥା

କହନ୍ତି ସୁବଞ୍ଚ ମୋ ଦୃଢ଼ ପ୍ରତଞ୍ଚ
ନ ବରିବି ଅନ୍ୟ ବରେ
ଦୈବ ୧ବିପର୍ଯ୍ୟୟେ ମୁଁ ଜଳେ ବୁଡ଼ିବି
ପୋଡ଼ିବି ବା ୨ବୈଶ୍ୱାନରେ ।
ଅବା ୩ଉଦ୍‌ବନ୍ଧନେ କିବା ବିଷପାନେ
ହାରିବି ନଶ୍ୱର ଦେହ
ନଶ୍ୱର ଜୀବନ ବିନାଶନେ କିବା
ରହିବ ମୋହର ମୋହ ।
"ଜୀବନ ଧାରଣ ମାତ୍ର ଅକାରଣ
ଯେ ଜ୍ଞାନ, ବିବେକ ହୀନ
ତଦୟ ୪ବିଲୟ ରହିବା ଦୁର୍ବିଷେ
ଜୀଇଁବା ମରିବା ସମ" ।
ନଳ ଯେ କହନ୍ତି ତବ ବୁଦ୍ଧି ଭ୍ରମ
ହେଲା ବୋଲି ମୁହିଁ ମଣେ
ଆତ୍ମହତ୍ୟା ଫଳ ଭୋଗି ଅବିକଳ
ରହିବ କଷ୍ଟପ୍ର ଧନେ ।
ଅନଳେ ସ୍ୱଦେହ ଦାହି ନେଲେ ଶେଷେ
ଯିବ ବୈଶ୍ୱାନର କୋଳେ
ଜଳେ ବୁଡ଼ିମଲେ ବରୁଣ ରାଜନ
ଅର୍ଦ୍ଧାଙ୍ଗିନୀ (ହେବ) ପରକାଳେ ।
ଶୂନ୍ୟେ ତବ ପ୍ରାଣ ଗଲେ ଉଦ୍‌ବନ୍ଧନେ
ମରୁତ୍ତ୍ୱ ଯେ ହେବେ ପତି

୧ ଦୈବଦୁର୍ବିପାକେ, ୨ ଅଗ୍ନିରେ, ୩ ଦୌଡ଼ିଦେଇ ମରିବା, ୪ ଲୁପ୍ତ

ବିଷ-ପାନେ ଜୀବ ଛାଡ଼ିଦେଲେ ହେବ
ଜୀବ-ଈଶ ପ୍ରିୟବତୀ ।
ଜୀବନାନ୍ତେ ଚୂର ଦେବଙ୍କ ମଧ୍ୟରୁ
ଏକ ହେବେ ତବ ବର
ସଦ୍ୟ ଅପମାନ ସେ ଦେବେ କରିବା
ନୁହେ ଜଗତ ବେଭାର ।
ଅବର କହଇ ଶଚୀପୂଜା ଅଦ୍ୟ
ପରେ ହୁଏ ସ୍ୱୟମ୍ବର
ଇନ୍ଦ୍ରେ ନ ବରିଲେ ଶଚୀ ଅଗମନ
ହୋଇବ ମାନ ଦୁସ୍ତର ।
ଜଳାନଳାଭାବେ ସ୍ୱୟମ୍ବର ହେବ
ତାହା ଯେଣୁ ଅସମ୍ଭବ
ବରୁଣ ଅନଳ ନ କଲେ ଗ୍ରହଣ
ଶାସ୍ତ୍ରୋକ୍ତ ବିଧି ନ ହେବ ।
ପ୍ରେତପତି ଯେବେ ପରିବାରୁ ନେବେ
କଣକୁ ତାଙ୍କ ଭୂମିକୁ
ଅଶୌଚ ବଶତଃ ସ୍ୱୟମ୍ବର ନୋହ
ସ୍ଥଗିତ ହେବ ଅଟକୁ ।
ଅପର କାରଣ ମୋର ଠାରୁ ଶୁଣ
ଯେବେ ଇନ୍ଦ୍ରେ ଅନାଦର
ତାହାଙ୍କ ଅଧୀନ କଳ୍ପ ଦ୍ରୁମେ ମାଗି
ଲଭିବେ ତୁମ୍ଭର କର ।
ବରୁଣ ନଗର କାମଧେନୁ ବର
ଲଭ ହେବେ ତବ ବର

ସରବ କାମିକ ଯଜ୍ଞରେ ପାବକ
ସଂକଳ୍ପ ସିଦ୍ଧେ ତତ୍ପର ।
ପ୍ରେତେଶ୍ୱର ପ୍ରଜା ଅଗସ୍ତି ଯେ କର
ଦେବାକୁ ହେଲେ ତତ୍ପର
ତୁମ୍ଭଙ୍କୁ ଦେବାକୁ ମାଗିଲେ ତାହାଙ୍କୁ
ସେ ହେବେ ତୁମ୍ଭର ବର ।
"ପ୍ରାର୍ଥୀର ପ୍ରାର୍ଥନା ନ କରଣ ହେନା
ପୂରଣ କଲେ ତା' ପରେ
ଉପହାସ ଜାଲ ମାତବେ ଭୂତଳେ
ଘୃଣା-ଯୋଗ୍ୟା ହେବନରେ ।"
ବିବିଧ ସିଦ୍ଧାନ୍ତ ବଲେ ନଳ ଦୂତ-
ପଣ ଯେ ହୋଇଲା ବ୍ୟର୍ଥ
ସତ୍ୟବ୍ରତେ ଜେମା ଦେଖି ଦୃଢ଼ୀଭୂତ
ମାନସେ ହେଲେ ବ୍ୟଥିତ ।
ଜାଣିଲେ ଜେମାଙ୍କ ହୃଦାସନେ ତାଙ୍କ
ସ୍ଥାନ ଥିଲା ଅତ୍ୟଧିକ
ତଥାପି ମାନସ ନୋହି ହର୍ଷଭର
ଦେଲା ତାଙ୍କୁ ବହୁ ଦୁଃଖ ।
ସୁଯୋଗ୍ୟା ଚତୁରୀ ବିବେକିନୀ ନାରୀ
ଯୁକ୍ତିର ନୋହି ଅଯୁତ
ରହିବା ଦେଖିଣ ନ୍ୟୂନ କରି ମନ
ମଣିଲେ ସେ ବିଧିକୃତ ।
ଗୁରୁତର କଷ୍ଟ ହୃଦେ ସନ୍ନିବିଷ୍ଟ
କରି ବିଦା ନେଲେ ନଳ

ପଥେ ମୃତ୍ୟୁମୁଖୁ ଯେମାଙ୍କ ଉଦ୍ଧର
ଚିନ୍ତ ହୋଇଲେ ବିକଳ ।
ଭାବିଲେ ସେ କିବା; ଫେରିବେ ସ୍ୱପୁରେ
ନିଜ କାମନାକୁ ଠେଲି
ଘଟିତ ଚରିତ କରିଲ ବିବୃତ
ବୁଝି ଗଲ ତାଙ୍କ ହଜ ।
ଭୈମୀ ସଂକଳପ ଜଣାଇଲ ଠିକ
ନିଜ ବିନା ଅନେ ସେହୁ
ନ ବରିବେ କେବେ ନିଷ୍ଟେ ପ୍ରାଣତ୍ୟାଗେ
ମନକୁ ନେବେ ବଳାଇ ।
ଅପର ଦିଗରେ ଭାବିଲେ ସେ ଥରେ
ଦେବେନ୍ଦ୍ରାଦି ଅପମାନ
କି ଦୁର୍ଦ୍ଦଶା ପରେ ଭସିବେ ସେ ଦରେ
ସକଳ ନେଲେ ସେ ଗୁଣି ।
ସେହୁ କାଳ ଭେଟି ଦେବରଥ ଗୋଟି
କହିଲେ ଚଳନ୍ତିତଳ
ବିଷଣ୍ଣ ଆନନେ ରହିଣ ଆପଣେ
ପ୍ରକାଶିଲେ ବହୁ ଦୁଃଖ ।
କହିଲେ ମୋ ସତ୍ୟ ପାଳ ଯଥୋଚିତ
ବିବିଧ ଯୁକ୍ତି ବଶତ
ତାହାଙ୍କୁ ସୁପଥେ ନେବାକୁ ସମର୍ଥ
ନ ହେଲ ତେଣୁ ଦୁଃଖିତ ।



## ସପ୍ତମ ସର୍ଗ

ପରଦ୍ଧନ ଦମ- ୟନ୍ତୀ ସ୍ୱୟମ୍ବର
ପ୍ରାତେଃ ଚମକ ଘୋଷଣା
କରିବାରୁ ରହେ ପୁର ସୁସଜ୍ଜିତେ
ସରବେ ଯେଣୁ ଉନ୍ମନା ।
ରାଜ ପଥଗୁଡ଼ିରେ ପଥ ପରିଷ୍କାର
କଲେ ଯତ୍ନ ସହକାରେ
ନାଗର, ନାଗରୀ ହରଷ ଯୁକତେ
ସ୍ୱଚ୍ଛେ ରଖିଲେ ସ୍ୱ-ଦ୍ୱାରେ ।
ନଗର ପ୍ରବେଶ- ଦ୍ୱାରେ ୧ଅଭ୍ରଂକଷ
ବୈଜୟନ୍ତୀ ଝୁଲେ ଧୀରେ
ଗୁଣେ ରୂପେ କେମା ସମ ଯା ଗରମା
ଜଣାଏ ବା' ଯାନ୍ତୁ ପୁରେ ।
ଶୁଭ ଦନ ଯେଣୁ ଦ୍ୱାରେ ରମ୍ଭା ତରୁ
ରୋପିଲେ ଜନେ ମୁଦରେ
ମଣ୍ଡଳ ଉପରେ ଦୀପ, ପୂର୍ଣ୍ଣକୁମ୍ଭ
ବାଢ଼ିଲେ ହରଷ ଭରେ ।
ଶ୍ରେଣୀବଦ୍ଧ ଗୃହେ ଶ୍ରେଣୀ ଚ୍ୟୁତ ନୋହୁ
ରହିଲେ ଶୁଭ ସଙ୍କେତେ
୨ପୁର-ଶ୍ରୀ ବର୍ଦ୍ଧନେ ପ୍ରଶସ୍ତ ସେମାନେ
ହୋଇଲେ ଦର୍ଶକ କେତେ ।

---

୧ ଅକାଶସ୍ପର୍ଶୀ, ୨ ପୁରଶୋଭା

ରୂଚ ପଦେ ସୁମ- ମାଳେ ସୁଗନ୍ଧିତେ
ତୋରଣ ଶ୍ରେଣୀ ରାଜନ୍ତି
ଦର୍ଶକ ଦୃଷ୍ଟିକି ଇନ୍ଦ୍ର-ଧନୁ ସମ
ସେ ପ୍ରତୀତ ବା ହୁଅନ୍ତି ।
ନୃପ ସେନାଗଣ ଶସ୍ତ୍ରାସ୍ତ୍ର ଧରଣ
ମଧ୍ୟେ ମଧ୍ୟେ ଛିଡ଼ା ରହି
ସୁବେଶେ ଶୋଭିତ ମନ ବିମୋହିତ
ଦୃଶ୍ୟ ବାଢ଼ୁଥାନ୍ତି ସେହି ।
ଜଣାନ୍ତି ସେ କିବା ଦମୟନ୍ତୀ ଶୋଭା
ବାହାରେ ରହଇ ପୁରେ
ଅଗନ୍ତୁକ-ଭ୍ରମ ନିବାରଣେ ସେନା
ଜଗନ୍ତି ସରବ ଦ୍ୱାରେ ।
କିବା ଯେହ୍ନ ଧର୍ମ- ପରାୟଣ ରାଣ
ଚଳିବେ ସେ ରାଜ-ମାର୍ଗେ
ଶତ ଶତ ଶୁଭ- ଚିହ୍ନ ତାଙ୍କ ନେତ୍ରେ
ପଡ଼ିବେ ଦଗେ ବାଦଗେ ।
ସ୍ୱପ୍ନରେ ସମ୍ଭବ ଯେ ଶୁଭ ସଙ୍କେତେ
ଦେଖାଗଲେ ଅନ ପୁରେ
ଦର୍ଶକ ମାନସ ହୁଏ ବିକଶିତ
ଉତ୍ସାହେ ସେ ରହେ ଭରେ ।
ଉତ୍କଣ୍ଠିତ ନଳ ନିଜ ସେନା ଦଳ
ମଧ୍ୟେ ତାଙ୍କ ଦିବ୍ୟ ରଥେ
ଉପବିଷ୍ଟ ହୋଇ ସର୍ବ ଦଗେ ଗୃହି
ଘୋଟକେ ଗୁଳନ୍ତି ତ୍ୱରେ ।

ଧ୍ୱଜା ଦେଖି ରାଜା ଭାବନ୍ତି କିବା ସେ
ଦମୟନ୍ତୀ ଯଶ-କେତ
ସ୍ୱର୍ଗ, ମର୍ତ୍ତ୍ୟ ପୁରେ ସମ ନାହିଁ ତାରେ
ଚଳନେ ସେ କରେ ଖ୍ୟାତ ।
ଦ୍ୱାରେ ଦ୍ୱାରେ ପୁର ନବୀନା ଯୁବତୀ
୧ଦେହଳୀ ପାରୁଣେ ରହି
ରାଜା ଆଗମନ ଦେଖନ୍ତି କୁତୁକେ
ଉପରାଣ ଫେଇ ନେଇ ।
କଲେ ନେତ୍ର ଧନ୍ୟା ନିଜେ ହେଲେ ଧନ୍ୟା
ନଳ-ବପୁ ଗୃହିଁ ନେଇ
ଦମୟନ୍ତୀ ବର ଲଭନ୍ତୁ ତାହାଙ୍କୁ
ମନାସିଲେ ସର୍ବେ ତାହି ।
ହେମ-ଥାଳୀ ସମ ଦିଶେ ତାଙ୍କ ଅସ୍ୟ୨
ବରଣ-ଥାଳୀ ବା ଧାତା
ଦମୟନ୍ତୀ ପର- ଶଯ୍ୟୁ ନେଇ ଚନ୍ତି
(କଲେ) ସରବ ପୁରେ ଶୋଭିତା ।
ନଳ ନେତ୍ର ପଥେ ସରୋଜ-ବଦନ
ପଡ଼ିବାରୁ ଅନୁକ୍ଷଣ
ଧୀରେ ସେ ଚଳାନ୍ତି ହୟ ଚତୁଷ୍ଟୟ
ଦେଖନ୍ତି ରୂପ ମୋହନ ।
କିଛୁ କାଳ ପରେ ରାଜ ସିଂହଦ୍ୱାରେ
ରଥ ହେଲା ପରବେଶ

୧ ଏରଣ୍ଡି, ୨ ବଦନ

ଶସ୍ତ୍ର ଧାରୀ ୧ପୁର-  ପାଳେ ପାଶେ ମିଳି
ପୁରେ ଛାଡ଼ିଲେ ନରେଶ ।
କ୍ରୁଦ୍ଧାକ୍ରୁଦ୍ଧ ହେଲେ  ସୌନ୍ଦର୍ଯ୍ୟ ତାଙ୍କର
କନ୍ଦରପେ ଦିଏ ହାରି
ପନ୍ଦର ବୟସୀ  ନବୀନା ଲଳସୀ
ହୋଇବା ୨ହର-ଅରି ।
କେ ବୋଲଇ ହର  ବରଜି ମନ୍ଦର
ଛଦ୍ମବେଶେ ଭୀମପୁରେ
ଯୋଗାସନ ତେଜି  ହେଲେ ଉପଗତ
ଜେମା-କର କାମନାରେ ।
କାହା ମତେ ପୁର-  ନ୍ଦର ବା' ବିଜୟ
କଲେ ବିଦର୍ଭ ନଗରେ
ସୁର-ବିମୋହିନୀ  ଦେବ କନ୍ୟା ଶ୍ରେଣୀ.
ତୁଚ୍ଛ କରି ଅବହେଳେ ।
ଦେଖିଲେ ନୃପତି  ବାଟେ ଭୃତ୍ୟତତ
ଲଗିଛନ୍ତି ନିଜ କର୍ମେ
ରାଜ ବଂଶାବଳୀ  କରନ୍ତି ଆବୃତ୍ତି
ସାଧୁ ଶବଦେ ନିଃଶମେ ।
ଉପକଣ୍ଠେ ୩ଗ୍ରୈପ-  ଦାର ବିଦ୍ୟମାନ
କରେ ଧରି ରୌପ୍ୟଦଣ୍ଡ
ଅଖଣ୍ଡ-ମଣ୍ଡଳ-  ଦଣ୍ଡଧର ଭୀମ
ସର୍ବ ଯଶ ତାଙ୍କେ ଲୁଣ୍ଠେ ।

---

୧ ପୁର-ରକ୍ଷକ, ୨ କନ୍ଦର୍ପ, ୩ ଖୁଣ୍ଟିଆ ସହକର୍ମୀ,

ଯଶେ, ଗୁଣେ ଯେହୁ ଥିବେ ସମ ହୋଇ
କେମା ତାଙ୍କୁ ନେବେ ବର
କେଶରୀ-ଶାବକ କେବେ କି ଗୌରବ
କରେ ହୀନ ବସ୍ତ-ତସ୍କର ।
ଖୁଣ୍ଟିଆ ଉପାଧି ଧାରୀ ଯେ ପୁରୁଷ
ଖୁଣ୍ଟି ପ୍ରାୟ ଛୁଡ଼ା ରହେ
ଲୈପଦାର ସମ ରାଜା ସୁତ ଗାନ
କରି ନେଉଥାଏ ମୂହେଁ ।
ତାର ବାକ୍ୟ ଗୁଳା ଶୁଣି ନେଲ ନଳ
ନୟନେ ମଣ୍ଡପ ଶୋଭା
ନାରୀଷଣେ ଲଗି ତନ ତନ କରି
ଦେଖିଲେ ସେ ମନୋଲୋଭା ।
ଷଡ଼କୋଣ ବୃତ୍ତ କରେ ପରାହତ
ସୁଦିବ୍ୟ ମଣ୍ଡପ ସ୍ଥିତ
ସ୍ୱର୍ଣ୍ଣ ବଳଭୃତ ଷଟ୍, ଶତ ସ୍ତମ୍ଭ
ଊର୍ଦ୍ଧ୍ୱ ଦେଶେ ତାର ସ୍ଥିତ ।
ଦ୍ୱାର-ହୀନ ହୋଇ ସମଗ୍ର ଉନ୍ନୁକ୍ତ
ସ୍ଥିତ ଯେଣୁ ଥିଲା ଉଚ୍ଚେ
ଦୃଷ୍ଟି-କ୍ଷୀଣ ଥିଲେ କେ ହେଲେ ଦର୍ଶକ
ଦେଖଇ ସକଳେ ସ୍ୱଚ୍ଛେ ।
ସ୍ତମ୍ଭ ଊର୍ଦ୍ଧ୍ୱ ଦେଶେ ନାନା କାରୁ କାର୍ଯ୍ୟ
ମନ-ଧନ ନିଏ ହରି

---

୧ ବାଛୁରୀ, ୨ ସମୂହ, ୧ ଖୋଲା

କାହିଁ ବା' ସାବିତ୍ରୀ                    କାହିଁ ଶତ ଚିତ୍ର
ଦୃଷ୍ଟି ନାଅଇ ଓଢ଼ାର ।
ପ୍ରକାଣ୍ଡ ବିତାନ                    ୧ପ୍ରତିକୃତି ପୂର୍ଣ୍ଣ
ହୋଇ ଦଶେ ମନୋହର
ମଧ୍ୟଧାମେ ବୀର-                    ଶୂର ଯୁବାଙ୍କର
ଚିତ୍ରରେ ସେ ଥିଲ ଭର ।
ବିଚିତ୍ର ଚିତ୍ରଣ                    ଭାବୁକ ଦେଖଣ
ଭାବବ ସେ ଉତ୍ତେଜନା
ଯୁବକ, ଯୁବତୀ                    ମନେ କରୁଥାନ୍ତି
ରମ୍ୟ ସେ ମଣ୍ଡପେ କିନା ।
ଧାଡ଼ି ଧାଡ଼ି ହୋଇ                    କନକ ଆସନେ
ଚିତ୍ରବ'ସେ ବିମଣ୍ଡିତ
ଆଗତ ରାଜନେ                    ଆସନ ବିଧାନେ
ହୋଇଥିଲେ ଅବସ୍ଥିତ ।
ଊର୍ଦ୍ଧ୍ୱ ଦେଶେ ତାର                    ସୁବର୍ଣ୍ଣ କଳଶେ
ବିରାଜନ୍ତି ଶ୍ରେଣୀବଦ୍ଧେ
ସୁବାସ କୁସୁମେ                    ସେ ରହନ୍ତି ପୂର୍ଣ୍ଣ
୨ଗୁଣ ସଂଯୋଜିତ ହୁଦେ ।
ରାଜନେ ଆସୀନ                    ହେବା କ୍ଷଣେ ଗୁଣ
ଓଢ଼ାର ପରସ୍ପରଙ୍କେ
ପୁଷ୍ପ ବୃଷ୍ଟି କର                    ନରପତି ଶିରେ
ରଖନ୍ତି ତାଙ୍କୁ ୩ପୁଲକେ ।

---

୧ ଚିତ୍ର, ୨ ଡଗା, ୩ ହର୍ଷେ

ନଳ ରଜା ତହିଁ ବସି ଏକାସନେ
ଦେଖନ୍ତ ମଣ୍ଡପ-ଦୃଶ୍ୟ
କୁସୁମ ବରଷି ଗଲ ତାଙ୍କ ଶିରେ
ବଦନେ ଫୁଟିଲ ହାସ ।
ସୁଯୋଗ୍ୟ ମାନବ ୧ଭୂଷ ଭୂଷ ଚଯ
ଅବର ରମଣୀ ରନୁ
ଦେଖି ପ୍ରୀତ ମନେ ହେଲେ ଅନାଇ
ନାନା ଭାବ ମନେ ପୁଣ୍ଡ ।
ତା ପରେ ଅସିଲେ ଦେବ ଚତୁଷ୍ଟୟ
ନଳଙ୍କ ସ୍ବରୂପ ବହ
ନଳଙ୍କ ପାରୁଶେ ବସିଲେ ଗୁଣରେ
ସ୍ଥୈର୍ଯ୍ୟ, ଗାମ୍ଭୀର୍ଯ୍ୟ ଅନାଇଁ ।
ମାଳବ, ଗୁର୍ଜ୍ଜର କାନ୍ୟକୁବ୍ଜ ନର-
ପତ ହେଲେ ଉପଗତ
ସୌରାଷ୍ଟ୍ର, ବରାଟ, ମହାରାଷ୍ଟ୍ର ରାଟ
ଦଲ୍ଲୀଶ୍ବରଦ ଅଗତ ।
କେ ମନ-ମୋହନ- ସୁବେଶେ ମଣ୍ଡିତ
ରତନ ମାଣିକ୍ୟ ହାରେ
ମନଲୋଭା ଶୋଭା ଯା' ଦୃଷ୍ଟି ପ୍ରତଭା
୨ଅବଷଣେ ବ୍ୟକ୍ତ କରେ ।
କା' ଭଙ୍ଗୀ ଜଣାଏ ଗମ୍ଭୀର ହୃଦୟେ
ପୂବଛନ୍ତ ନରବାଣ

୧ ବହୁବହୁ, ୨ ଦର୍ଶନେ

ସୁବେଶ ସରଳ ହେଲେହେଁ ତାଙ୍କର
ଗୁଣେ ୧ରତ୍ନାକରୋପମ ।
ଜଦବଗ୍ନ ଭରେ ବସି ନରପତେ
ଭାସୁଥାନ୍ତି ଚନ୍ତା ସ୍ରୋତେ
ଦମୟନ୍ତୀ ପ୍ରେମ- ଅଶା-ନାବେ ପୁଣି
କୃତାର୍ଥେ ରହୁବେ ମର୍ତ୍ତ୍ୟେ ।
ସେ କାଳେ ଗହଳ- ଧ୍ୱନି ଅନ୍ତଃପୁରୁ
୨ମଳୟ-ମରୁତ ସମ
ବନିର୍ଗତ ହୋଇ ସର୍ବ ମନ ମୋହୁ
କୃଷ୍ଟି କଲା ଆକର୍ଷଣ ।
ଗର୍ଭାଧାନ ଆଦ ଜେମାଙ୍କ ସଂସ୍କାର
ଆରମ୍ଭିଲେ ପୁରୋହିତେ
ଶ୍ରବଣେ ରାଜନେ ଘାବଲେ ସେକ୍ଷଣି
କର୍ମ ପ୍ରାରମ୍ଭେ ବେଦୋକ୍ତେ ।
୩ବାଦକ ବାଦନ ସାଧ୍ୱୀ ମୁଖ ସ୍ୱନ
ହୁଳ-ଧ୍ୱନି ସମିଶ୍ରଣେ
ଅନନ୍ଦ-ସରତ- ପତି ୪ଜଡ଼ବେଳତ
ହେଲା ଭାବ ବସେ ମନେ ।
କର୍ଣ୍ଣବେଧ, ଚୂଡ଼ା କରଣ ବିଧାନ
ଯଥା କାଳେ ହେଲା ଶେଷ
ରାଜ-ପୁରେ ପରେ ଶୋକ-ସ୍ରୋତ ଖେଳେ
ହେଲେ ସରବେ ୫ବେହୋସ୍ ।

---

୧ ସମୁଦ୍ର, ୨ ଦକ୍ଷିଣା ପବନ, ୩ ବାଦ୍ୟ, ୪ ଜଡ଼ୀଭୂତ
୫ ଅଜ୍ଞାନ

୧ଚେଟୀ ମନୋଯୋଗେ ଦମୟନ୍ତୀ ବେଶ
କରିଲେ ସବୁଗ ବହୁ
ଚିତ୍ର-ପଟ ପରେ ଅଗତ-ବିଚ୍ଛେଦ-
ଚିନ୍ତା-ଘାତ କରୁଥାଇ ।
ଗବାକ୍ଷନ ପାଶେ ଜେମା ସୁଖାସନେ
ବସାଇଣ ପ୍ରୀତି ଭରେ
ସେମାନେ ପାରୁଶେ ହେଲେ ଉପବିଷ୍ଟ
(ଯଥା) କାନ୍ତସ୍ତ, ଶଚ ଘମୁରେ ।
ସଜ୍ଜା, ଶୋଭା ଦେଖି ନିଅନ୍ତି ସରବେ
ସୁଧର୍ମାକୁ ଜିତ ଶୋହେ
ବର ବର୍ଣ୍ଣନାର ବର ବରିବାର
ସମୟ ହାଜର ହୁଏ ।
ଜନନୀ ହାଜର ହୋଇ ବର୍ଣ୍ଣଥାଳୀ
ପରଖି ନେଇ ସବୁଭେ
ଜେମାଙ୍କୁ କହିଲେ ସଖୀ ସହ ଚାଲ
ସ୍ୱୟମ୍ବର ସ୍ଥଳେ ବେଗେ ।
ରାଜନ ମଣ୍ଡଳୀ ମଣ୍ଡି ସଭାସ୍ଥଳୀ
ବସନ୍ତି ଉତ୍ସୁକ ମନେ
ତବ ମୁଖ-ଶଶୀ ଦର୍ଶନେ ଲାଳସୀ
ଅଟନ୍ତି ଚକୋରୋପମେ ।
୨ଉତ୍‌କଣ୍ଠିତ ମତି ବଣେ ସେ ଯୁବତୀ
ଉଥାନେ କରନ୍ତେ ମନ

---

୧ ଦାସୀ, ୨ ଉଦ୍‌ବିଗ୍ନ

୧ତ୍ରପାପୁର ବଳେ ରଖି ନିଜ କୋଳେ
ବସାଇ ଦେଲ ବଦନ ।
୨ଦେର ଦେଖି ରଜା ଅମ୍ବଜା ପୂରତେ
ହାଜର ହୋଇ ସେକାଳେ
୩ଉପାଲମ୍ଭ ରଖି ସବ୍ରେଷେ ବର୍ଣ୍ଣାଇ
କହିଲେ ଗୁଳ ସକଳେ ।
ଜନକ-ସ୍ୱଜନ ଅନୁଜ୍ଞା ପାଳନ
କରଣେ ସେ ଜେମାଦେଇ
ଗାତ୍ରୋତ୍ଥାନ କଲେ ଅସନ ଛାଡ଼ିଲେ
ବିନମ୍ର ବଦନା ହୋଇ ।
ମନ ନିଜ ଶକ୍ତ ୪ଅଦାନେ ଅଶକ୍ତ
ଥିଲ ଯେଣୁ ନଳେ ଚିନ୍ତ
ସହଚରୀ ବ୍ରାତ ଧରି ତାଙ୍କ ହସ୍ତ
ସଧୀରେ ତାଙ୍କୁ ଚଳାନ୍ତି ।
ମନ୍ଥର ସୁଗତ ନେଇଥାଏ କାତ
ଦମୟନ୍ତୀ ଗତ ହେଲେ
ଯଥାକାଳେ ସଭା ଶୋଭା ବିକାଶିଲେ
ମୋହିନୀ-କନ୍ୟା ବା' ଛଲେ ।
ପ୍ରେମ-ସୁଧା ଦେବେ ମାନ୍ତ ନଳ-ଦେବେ
ଉପେକ୍ଷା କରି ଇତରେ
ଏକ ଏକ ନୃପ ସଖୀ ପରିଚୟେ
ତ୍ୟଜନ୍ତି ତାଙ୍କୁ ସତ୍ୱରେ ।

---

୧ ଲଜ୍ଜାପୁର, ୨ ବିଳମ୍ବ, ୩ ଭର୍ତ୍ସନା, ୪ ଗ୍ରହଣେ

ପ୍ରଥମେ ନେପାଳ- ଭୂପାଳ ୧ମଞ୍ଜୁଳ-
ବେଶେ ଥିଲେ ମନୋହର
ତାଙ୍କ ଗୁଣ, ଧନ, ଯଶ, ଶୁର ପଣ
ଶୁଣିଲେ ହେଁ ଅନାଦର (କଲେ) ।
ଦେଖିଲେ କର୍ଣ୍ଣାଟ- ଧିପତି, ଧୀମତି
କର୍ଣ୍ଣେ ଶୁଣି ତାଙ୍କ କୀର୍ତ୍ତି
ମନ ନ ବଳାଇ ତାଙ୍କୁ ପଛୁଆଇ
ଚଳିଲେ କେମା ଝଟିତି ।
କାନ୍ୟକୁବ୍ଜ ୨ଅବ୍ଜ- ବଦନ ନରେଶ
ଯଶ-ଗାନ ରୁଚିକର
ନମଣି ରମଣୀ ହୋଇ ବଜାନନୀ
ଅଗ୍ରେ ଚଳିଲେ ତତ୍ପର ।
ମିଥିଳା ଅଧୀଶ ୩ଅଧୋଢ଼ା ବୟସ
ଦୃଷ୍ଟିକୁ ଯେଣୁ ଗୋଚର
୪ପର୍ଯ୍ୟୁଷିତ ପଦ୍ମ ମଧୁପ ବର୍ଜନ
କଲାପରି କଲେ ଦୂର ।
ମଗଧ ରାଜନ ମକର-କୁଣ୍ଡଳେ
ଥିଲେ ଯେ ଉପବେଶନ
୫ସୌଷ୍ଠବ ତାଙ୍କର ମନୋମୁଗ୍ଧକର
ହେଲେହେଁ ନ ନେଲେ ମାନ ।
କାହା ଗୁଣେ, ରୂପେ ନୋହୁ ବିମୋହିତା
ଭ୍ରମନ୍ତି ଯେ ଦମୟନ୍ତୀ

---

୧ ସୁନ୍ଦର, ୨ ପଦ୍ମ, ଚନ୍ଦ୍ର, ୩ ଦରବୁଢ଼ା, ୪ ବାସି, ୫ ସୌନ୍ଦର୍ଯ୍ୟ

ନିଷଧ-ଭୂଜାନ ନଳ ଅନ୍ବେଷଣେ
ନିଯୋଜିଣ ନିଜ ମତ ।
ଗୋଟି ଗୋଟି ଦେଖି ଗଲେ ସେ ସୁମୁଖୀ
ହେଲେ ଯହିଁ ନଳରଜା
ପାଞ୍ଚଜଣ ଏକା- କାର ଅବସ୍ଥିତ
ଦେଖି ହ୍ରସ୍ବ କଲେ ମନ୍ତ୍ରୀ ।
କେହ୍ନ ସତ୍ୟ ନଳ କେହ୍ନ ଅବା ଛଳ-
ରୂପୀ ନିଦାନେ ଅକ୍ଷମ
ହୋଇ ଦମୟନ୍ତୀ ମନେ ମନେ ଚିନ୍ତା
କଲେ ବିବିଧ ତର୍କଣା ।
ପୂର୍ବେ ଜା'ଣ ଦୂତ- ପଣେ ଉପଗତ
ହୋଇ ତାହାଙ୍କ ପୂରତେ
ଗୃହ ଦେବେ ତାଙ୍କ ପାଣି ୧ଲାଳାୟିତ
କହିଥିଲେ ଥରେ ସତେ ।
ସେହି ଗୃହ ଦେବେ ନଳ ପ୍ରତିମୂର୍ତ୍ତି
ସଭାରେ ଉପବେଶନ
ଥିବାର ପ୍ରତ୍ୟକ୍ଷ ଦେଖାଗଲା ତେବେ
ଚିନ୍ତା-ସରେ ହେଲେ ମଗ୍ନ ।
ଦେଲେ ବର୍ଣ୍ଣ-ହାର ୨ଛଳ-ନଳ ଗଳେ
ହେବ ତ ସତୀତ୍ବ କ୍ଷୀଣ
ସେ ହେତୁ ଅଧ୍ୟାତ୍ମ- ଚିନ୍ତା ତାଙ୍କ ଅସ୍ତ୍ର
କଲେ ଚିନ୍ତ ଅଭିଯାଣ ।

---

୧ ବାସନା କରିବା, ୨ କପଟ

ଦେବତା ଚରଣ ନ ଲାଗିବ ଭୂମେ
ଦୃଷ୍ଟି ଥିବ ୧ନିର୍ନିମେଷ
ଜ୍ଞାତ ଥିଲେ ହେଲେ ଚଳଣି ତାଙ୍କରେ
ଦୃଢ଼ ମନ ହେଲା ୨ହ୍ରସ୍ୱ ।
ଆପଦ-ବାନ୍ଧବ ଆପଦୋଦ୍ଧାରଣ-
ବାନା ଯା'ଙ୍କ ଜଡ଼େ ବନ୍ଧେ
ତାହାଙ୍କ କରୁଣା ମୋହ ପାଶ ଛିନ୍ନ
କରିଦେବ ଭବବନ୍ଧେ ।
ଯୌଣ ଚନ୍ଦ୍ରା ବଳେ ମତ ଦୃଢ଼ତମ
କରିନେଲେ ବିବେକିନୀ
ସାନୁନୟ ବାକ୍ୟ ଶରେ ସର୍ବ ବକ୍ଷ
ବିଦାରିଲେ ସେହିକ୍ଷଣି ।
ବୋଇଲେ ଜଗତ ହିତ ସାଧନ ତ
ଦେବ କରେ ସମର୍ପିତ
ନାକଲୋକେ ବାସ କରି ଗ୍ରହ ବିଶ୍ୱ
ସେ ୩ଭଣ୍ଡ ମଣେ ଏବେ ତ ।
ପ୍ରଭୁ କେବେ ହେଲେ ଅନୀତ ଚଳଣି
କରନ୍ତି କି ସ୍ୱାର୍ଥ ଲଭେ
ସର୍ବ ଜନ ହିତ ସାଧନ ନିଯୁକ୍ତ
ରହି ବିଚରନ୍ତି ୪ଭବେ ।
ଆପଣଙ୍କ ଠାରୁଁ ହିତ, ନୀତ ଶିକ୍ଷା
ଲଭନ୍ତି ସୁଗୁଣୀ ଶ୍ରେଣୀ

---

୧ ଅପଲକ, ୨ ଊଣା, ୩ ମିଥ୍ୟା, ୪ ସଂସାରେ

ଦୁର୍ଗୁଣେ ପୂରିତ ଆପଣେ ଅଟ ତ
ଅଜ୍ଞାତ ତବ ଚଳଣି ।
ଇନ୍ଦ୍ରତ୍ୱ ଲାଳସା ନ କରେ ତ ବସା
ସରଗ ଧାମେ କେବେହେଁ
ପିତା ମୋର ହୋଇ ମୁଁ ହୀନା ପରାଣୀ
ପ୍ରେମ ଲୋଡ଼ କିପାଁ କହେ ।
ଦେବ ଓ ମାନବ ପ୍ରଭେଦ ସ୍ୱଭାବେ
ରହନ୍ତି ନିଶି ଦିବସେ
କେଉଁ ପ୍ରେମ-ସୁଖ ମୋହ ଦ୍ୱାର ଲଭ୍ୟ
ହୋଇବ ଚିନ୍ତ ମାନସେ ।
ଯମ ରାଜାଣିତେ ନରନାରୀ ଗଣେ
ବିହରନ୍ତି ସୁଖେ ଦୁଃଖେ
୧ନଶ୍ୱର ଯେ ନିଶ୍ଚେ ୨ଅବିନଶ୍ୱରେ ସେ
ସମ୍ବନ୍ଧ ରହେ କି ସୁଖେ ।
ସ୍ୱର୍ଗେ ନାହିଁ ଦୁଃଖ ଭବେ ନାହିଁ ସୁଖ
ଜାଣ ତ ଆପଣମାନେ
ମୁଁ ହେଲେ ସଙ୍ଗିନୀ ତବ ଅର୍ଦ୍ଧାଙ୍ଗିନୀ
ରହିବ କାହୁଁ ପ୍ରସଙ୍ଗେ ।
ହୀରକ ବରଜି ତୁଚ୍ଛ କାଚେ ମଣି
ରହିବା ଅଯୁକ୍ତ କଥା
ଜ୍ଞାନେ ପୂର୍ଣ୍ଣ ହୋଇ ସତ୍ତ୍ୱେ ରହ ଶୋଭି
ତବ ଈପ୍ସିତ ଅଙ୍କିତା ।

---

୧ ବିନାଶଶୀଳ, ୨ ବିନାଶ ରହିତ

ସତ୍ୟ ପ୍ରକଟନ ପଣ ତ ଅପଣେ
କରନ୍ତୁ ଦେବଗଣେ
ମୋ ସତ୍ୟ ବଚନ୍ତୁ କରଣେ ଅଣିଷ୍ଟ
(ହେଲେ) ନିନ୍ଦ୍ୟ ହେବ ତ୍ରିଭୁବନେ ।
ପିତା ଦଉ କନ୍ୟା ଗ୍ରହଣ ନ କରେ
ନିଜ ୧ଅର୍ଦ୍ଧାଙ୍ଗିନୀ ସଙ୍ଗେ
ପଶୁ ସମାଜେ ଯା ଅଟେ ପ୍ରଚଳିତ
ଆଚର ଏବେ ଅଧର୍ମେ ।
ସତୀ ସିନା ମାନ- ଦଣ୍ଡ ଧରଣୀର
ସେ ସତୀତ୍ୱ ସଂରକ୍ଷଣେ
ମନ ବଳାଇବା ସାଧୁ ମନୋବୃତ୍ତି
ଅସାଧୁ କି ଦେବଗଣେ ।
ଦାସୀ ପଣେ ତବ ଅଯୋଗ୍ୟ ୨ଅତୀବ
ମୁଁ ମଣେ ଆପଣାକୁହି
କି ସୁଖ ଲଭିବ ମୋ ପାଣିଗ୍ରହଣେ
ଦିଅ ତା ମତେ ବୁଝାଇ ।
ଦମୟନ୍ତୀ ଶ୍ଳେଷ ସତ୍ୟ ଉକ୍ତିମୟ
ଦେବ-ହୃଦ କଲା କ୍ଷତ
୩କର୍ଣ୍ଣେଶର ବତ ବିଦାରଣେ ତେ
ହୋଇ କଲା ବ୍ୟଥିତ ।
ନିଜ ଦୁର୍ବଳତା ମାନି ସେହିମାନେ
ସ୍ୱପ୍ନେ ସ୍ୱରୂପ ବହିଲେ

---

୧ ଭାର୍ଯ୍ୟା, ୨ ଅତିଶୟ, ୩ ତୀକ୍ଷ୍ଣ

କାହୁଁହିଁ ସନ୍ଦେହ ନଥିଲା କେମାନ୍ତ
ପ୍ରକୃତ ନଳ ଚିହ୍ନିଲେ ।
ସତୀ ୧ଭର୍ତ୍ସନାରେ ବିରକ୍ତ ସେ ନୋହି
ବରଂ ପ୍ରୀତ ହେଲେ ମନେ
ନଳ ପତି ପଣେ ଲଭି ଦମୟନ୍ତୀ
ବର ଦେଲେ ସେହିମାନେ ।
ଏକ ପ୍ରତୀ ଏକ ସୁପୁତ୍ର ଲଭିଣ
ଅହ୍ୟ ୨ସୁଲକ୍ଷଣୀ ହୋଇ
ପରାକାଷ୍ଠା ସତୀ ବ୍ରତ ପାଳି ନେଇ
ଖ୍ୟାତ-ରନ୍ଧ୍ରେ ମଣ୍ଡ ମହୀ ।
ଅବର ସେମାନେ ହୋଇ ତୃପ୍ତ ମନେ
ନଳେ ଦେଲେ ନାନା ବର
ଦେବେନ୍ଦ୍ର କହିଲେ ମୋ ସାକ୍ଷାତ ଭଲେ
ଯାଗେ ଲଭିବ ନିକର ।
ଅନଳ-ଅଭାବେ ଅନଳ ଲଭିବ
ନଳେ ଦେଲେ ଅଗ୍ନି ବର
ବରୁଣ ସାଦରେ କହିଲେ ରାଜନ
ଲୋଡ଼ିଲେ ପାଇବ ନୀର ।
୩ଦାଶେରକେ ଥିଲେ ହେଲେ ଜଳାଭାବ
ନ ରହିବ ଜାଣ ନଳ
ଅବଶ୍ୟକ କାଳେ ମନେ ସ୍ମର ନେଲେ
ଲଭିବ ଯଥେଚ୍ଛ ଜଳ ।

୧ ଭର୍ତ୍ସନା, ୨ ପତିବ୍ରତା ଶ୍ରେଷ୍ଠ, ୩ ମରୁଭୂମି

ଯମ ବରେ ରାଜା ରଞ୍ଜନ କର୍ମରେ
ନିରତେ ହେବେ ସୁଦକ୍ଷ
ଯାଙ୍କେ ଅବହେଳା ଥିଲେହେଁ ତାଙ୍କର
ସୁସ୍ୱାଦୁ ରହିବ ଭକ୍ଷ ।
ଗୁରୁ ଦେବେ ବର ନରେଶେ ପ୍ରଦାନ
କହିଲେ ମହୋପକାର
ଅବଶ୍ୟକ କାଳେ ତହାର ଲଭିଣ
ଜଗତେ ହେବ ହେ ବର ।
"ହାରଥିବା ନିଧି ଲଭି ଯଥା ସୁଧୀ
ହୁଅଇ ମନେ ପ୍ରମୋଦ
ବ୍ୟାଧ କରୁଁ ମୁକ୍ତ [1]କୁରଙ୍ଗୀ ଯେମନ୍ତ
ତଥା ହେଲ ଭୈମୀ ହୃଦ ।"
ଯା'ଙ୍କ ଚିନ୍ତାନଳେ ମନ ପ୍ରାଣାହୁତି
ଦେଉଥିଲେ ଅନୁକ୍ଷଣି
କରମ ସୁଫଳ ହୋଇ କଲା ଠୁଳ
ନଳ ପ୍ରାଣେ ନିଜ ପ୍ରାଣି ।
ଚନ୍ଦ୍ରମା-ବଦନ ତାଙ୍କର ଦର୍ଶନେ
ହରଇ ଦୁରିତ ତତି
ଏକାଗ୍ର ଦୃଷ୍ଟିରେ ନିଯୁକ୍ତ ରହିଲେ
ନଥାଇ କିଛିହିଁ ଭ୍ରାନ୍ତି ।
ପ୍ରେମ-ଜଳ[2] ହୃଦ- କେଦାର[3] ତନ୍ତ୍ରାଇ
[4]ଉଦ୍‌ବୃତ୍ତ କଲ ବାହାର

---

୧ ହରିଣୀ, ୨ ଝରଣା, ୩ କ୍ଷେତ୍ର, ୪ ବଳନ୍ତି

ଅଙ୍ଗେ ପ୍ରତି ଅଙ୍ଗେ ଫୁଟି ଦେଖାଗଲା
୧ମୋତିପରି ସ୍ୱେଦ ନୀର
ସମୀର ବିହୀନେ ପର୍କଟୀ୨ ପତର
ଯେମନ୍ତ ରହେ ଦୋହଲି
ତେମନ୍ତ ୩ବେପଥୁ ସଙ୍ଗେ କଣ୍ଟକୋଧେ
ରହିଲେ ପ୍ରେମ ବିହ୍ୱଳୀ ।
ତହିଁଶେଷେ ଦେବ- ଯୋଗ୍ୟ ବରମାଳ୍ୟ
ଗଳାଇଲେ ନଳଗଳେ
ଜୟ ନଳ, ଦମ- ୟନ୍ତୀ ଶୁଭନାଦ
ନିନାଦିତ ସଭା ସ୍ଥଳେ ।

## ଅଷ୍ଟମ ସର୍ଗ

ନଳ-ମୁଖ-ଚନ୍ଦ୍ର ଜ୍ୟୋତ୍ସ୍ନା ୪ବିକାରଣ
କରିଲା ସଭା ଗଗନେ
ନୃପ-ଦଳ ଆସ୍ୟ ୫ନଳିନ-କୋରକ
ଅତିରେ ରହିଲା ମ୍ଳାନେ ।
ଦେଖି ପ୍ରାଣ-ବନ୍ଧୁ ନଳ-ହୃଦ-ସିନ୍ଧୁ
ହୋଇଲା ସୀମାତିକ୍ରାନ୍ତ
ଭୁବିତ ପ୍ରାଣେଶୀ ସହାସ-ବଦନ-
କୂଳେ ରହିଲା ସ୍ଥଗିତ ।
ଭୀମ ନରପତି- ମତି ଯେ ଚକୋର
ବିକାଶ ହେଲା ସେ କ୍ଷଣି

---

୧ ମୁକ୍ତା ସମୂହ, ୨ ଅଶ୍ୱତ୍ଥ, ୩ କମ୍ପ, ୪ ବିକାଶ, ୫ ପଦ୍ମ

ଚକୋଣ୍ଣ ସମାନ ରାଣୀ-ସୁବଦନ
୧ଆନ୍ଦୋଳନ ନେଲା କିଣି ।
ନବୀନ ଦମ୍ପତ୍ତି ମୂରତି ଦେଖିଣ
ଦର୍ଶକେ ଭାବିଲେ ଏବେ
କାମ ପୂର୍ବ ଦେହ ବହ୍ନିକି ବିଜୟୀ
ଭବ ରତି ଧରେ କୋଳେ ।
ବର-କନ୍ୟା ଦ୍ୱୟ ଅନ୍ତଃପୁରେ ନେଇ
ବେଦୋକ୍ତ ବିଧି-କରମ
କମ୍ପି ସାଧ୍ୱୀଗଣ କଲେ ସମାପନ
ମିଶ୍ରିତେ ୨ମଙ୍ଗଳସ୍ୱନ ।
ବାଦନ କାହାଳୀ କମ୍ବୁ, ସିଂହା ଧ୍ୱନି
ଚମକାଇଲା ନଗର
ଅପସରା କିଣି ନର୍ତ୍ତକୀ ମଣ୍ଡଳ
ଗାୟନେ, ତାନେ ବିଭୋଳ ।
ମହା ସମାରୋହେ ଶୁଭ ପରିଣୟ
ବିଧାନ ହେଲା ସମାପ୍ତ
୩ଆପ୍ତ, ବନ୍ଧୁ ଜନେ ପୁର ପ୍ରଜାଗଣେ
ଉତ୍ସବେ ହେଲେ ଉନ୍ମତ୍ତ ।
"ସଉଦାଗର, ଯତ- ଶତ, ଅଶ୍ୱା ନର
ସୁଦୃଢ଼ କଲେ ସ୍ୱ-କାମ
ଅବଶ୍ୟ ସୁଫଳ ଲଭି ନେଇ କାଳେ
ମନୁଁ ତୁଟାଇବ ଭ୍ରମ ।

---

୧ ଆନ୍ଦୋଳନ, ୨ ହୁଳହୁଳା, ୩ ଆତ୍ମୀୟ

ଦଶା-ବିଜ୍ଞାପିକା[1]    [2]ଭ୍ରମ-ମରୀଚିକା
ନ ବାଧିବ ତାଙ୍କୁ ଥରେ
ସୁଖେ, ଦୁଃଖେ ଯେଣୁ    ସମ ଜ୍ଞାନ ତାର
ମୋହେ ନ ପଡ଼ିବ ବାରେ ।
ସଜ୍ଜନ ମାନସେ    ଯା ରହେ ଅଙ୍କିତ
ପରକାଳେ ସ୍ୱର୍ଣ୍ଣାକ୍ଷରେ
ତାହା ଲିପିବଦ୍ଧ    ହୁଏ ଅବାରିତ
ଅନୁଭବୀ ତା ସୁମରେ ।
ଲକ୍ଷ୍ୟ ହେଲେ ମାତ୍ର    ଅଲକ୍ଷଣେ ସ୍ୱତ
ସୁଫଳ ରହେ ସୁଦୂରେ
ଯେ ବରଷ ଶ୍ୱେତ    ମୟୂର ଚରିତ
(ଯେଣୁ) ସେ ବକେ ହୃଦ [3]ଅଗାରେ ।
ତାହାଙ୍କ ଅଙ୍କିତ    ନଥାଏ କିଛି ତ
ଲୋଡ଼ନ୍ତି ସେ ଯୋଗ୍ୟ ପାତ୍ର
ଯୋଗ୍ୟ ଯୁବା ଜନେ    ସୁଯୋଗ୍ୟା ରମଣୀ
କରନ୍ତି ଦମ୍ପତି ମାତ୍ର" ।
ନଳ-ଦମୟନ୍ତୀ    ଚରିତ, ସୁଖ୍ୟାତ
ଅନୁରୂପେ ଏକ ପ୍ରାଣ
ହେବାର ଉଚିତ    ଜାଣି ବିଶ୍ୱ-ତାତ
ଉଭୟ କଲେ ମିଳନ ।
ପିତାଲୟେ ସୁତା    ଅବର ଜାମାତା
ବିଶ୍ରାମିଲେ କେତେ ଦିନ

---

୧ ଭୟ ପ୍ରଦର୍ଶକ, ୨ ମୃଗତୃଷ୍ଣା, ୩ ଗୃହେ

ଉଭୟେ ଭୂପତି    କରି ଯେ ଦମ୍ପତି
ସ୍ୱ-ପୁରେ ପ୍ରୟାଣେ ମନ (କଲେ) ।
ବହୁ ଧନ, ଯାନ,    ଗଜାଦି ସହିତ
ସହ ପେଷିଲେ ଗୌରବେ
କନ୍ୟା-ଗଣ ଅଗେ·    ନଥିଲେ ସେ କିଛି
ଲୌକିକାଗ୍ରର ତା' ଭବେ ।
ଯଥା କାଳେ ନଳ    ପ୍ରାଣପ୍ରିୟା ମେଳେ
ମିଳନ୍ତେ ନିଷଧପୁରେ
ପୁର ପରଜାଏ    ଭକ୍ତି ପୁରଃସରେ
ଭେଟିଲେ ତାଙ୍କୁ ମାର୍ଗରେ ।
ମରଧାମୁଁ ଇନ୍ଦ୍ର    ବରୁଣାଦି ଦେବେ
ଫେରୁଥିଲେ ସୁର-ପୁରେ
ଦେଖିଲେ ଦ୍ୱାପର,    କଳି ଯାଉଛନ୍ତି
ସ୍ୱୟମ୍ବର ସଭା ସ୍ଥଳେ ।
ସକଳ ବିବୃତ    କରିଲେ ୧ବୃନ୍ଦାର
କହିଲେ ଯେ ଭାଗ୍ୟବାନ
ହେଲେ ନଳରାଜା    ଲଭି ଭୀମାତ୍ମଜା
ତିନି ପୁରେ ଯେ ରତନ ।
ଉଭୟେ ନିଷଧେ    ଫେରିଲେ ଆନନ୍ଦେ
ତୁମ୍ଭେ ଯିବା ଅକାରଣ
ବୃଥା ପରିଶ୍ରମ    ଅଶ୍ରେୟ ନିଦାନ
ହେବ ମୋ ବଚନ ମାନ ।

---

୧ ଇନ୍ଦ୍ର

ଖ୍ୟାତି, ଭୂଷା ସମ          ତାଙ୍କ ହୃଦେ ସ୍ଥାନ
କଳୁଷୁ ହେଲେ ବିରସ
ନାକ-ଦେବେ ତେଜି          ଦମୟନ୍ତୀ ନଳେ
ବରିବାରୁ କଲେ ରୋଷ ।
"ନାରୀ ଲୋଭେ କାମ          ହୋଇଲା ଜନମ
କାମରୁ କ୍ରୋଧ ଉତ୍ପତ୍ତି
କ୍ରୋଧୁଁ ପାପରାଶି          ଜନମେ ନିଶ୍ଚୟ
ଘଟିଲା ତେବେ ସେ ନୀତି" ।
ସ୍ଥିର କଲେ ଯାଇ          ନିଷଧେ ସେ ରହି
ନଳେ କରିବେ ହିଂସା
ଧର୍ମ ବର୍ତ୍ତି ଯିନା          ନଳ ଯାନ୍ତି ଗଣା
(ଦେବେ) ଧର୍ମ ବିନାଶି ଦୁର୍ଦ୍ଦଶା ।
"ଯହିଁ ସତ୍ତ୍ୱପୂର୍ଣ୍ଣ          ତାମସ ନଗଣ୍ୟ
ଥିବେ ମାତ୍ର ମିଶିରହେ
ହଂସ ୧ନିକୁରମ୍ବେ          ରହିଲେହେଁ ବକ
ସେ ହଂସ ଗଣିବ କିଏ" ।
ତଦ୍ଧି ସୁକାଳ          କଳି ନଳ ପାଶେ
ଗୋପନେ କଲେ ବିହାର
ସେ ୨ଶ୍ୟେନ ପ୍ରକାର          ନଳ-ମୀନ ଗ୍ରାସେ
ସର୍ବଦା ରହେ ଆତୁର ।
କାର୍ଯ୍ୟ ବଶେ ନଳ          ପାଦ ପ୍ରକ୍ଷାଳନ
ଭୁଲି ଯାଇ କଲେ ସନ୍ଧ୍ୟା

---

୧ ସମୂହେ, ୨ ଛଞ୍ଚାଣ

କଳି ସେ ଅମାତ ବଶେ ତାଙ୍କ ଦେହେ
ପ୍ରବେଶେ ଲଭେ ସୁବିଧା ।
ପୁଷ୍କର ନାମକ ନଳ ସହୋଦର
ଥିଲେ ସ୍ୱରାଜ୍ୟେ ନୃପତି
ଦ୍ୱାପର ପ୍ରବେଶି ତାହାଙ୍କ ଅନ୍ତରେ
ଗୃହିଲା ତାହାଙ୍କ ମତି ।
କଳି ଓ ଦ୍ୱାପର ମଧ୍ୟେ ସ୍ଥିରୀକୃତ
ହୋଇଥିଲା ସେ ବିଚାର
ଏକ ନଳ ଦେହେ ଅପର ପୁଷ୍କରେ
ରହି ସାଧିନେବେ ବୈର ।
ଦ୍ୱାପର ପୁଷ୍କରେ ସାହାଯ୍ୟ କରଣେ
ଥିଲା ଯେଣୁ ତତପର
ଅଶା ପାଶେ ତାଙ୍କୁ ବାନ୍ଧ ରଖିବାକୁ
କୌଶଳ କଲା ବିଚାର ।
ନଳରାଜା ସଙ୍ଗେ ଦ୍ୟୁତ କ୍ରୀଡ଼ା ରଙ୍ଗେ
ମନାଇ ନେଲା ପୁଷ୍କରେ
ହୋଇ ଅଶ୍ୱାନ୍ୱିତ ସେ ଗଲେ ତ୍ୱରିତ
ହେଲେ ନଳଙ୍କ ଅଗରେ ।
କ୍ରୀଡ଼ନେ ପ୍ରସ୍ତାବ କରନ୍ତେ ପୁଷ୍କର
ନଳ-ଦେହେ ସ୍ଥିତ କଳି
ପ୍ରବର୍ତ୍ତାଇ ତାଙ୍କୁ ସ୍ୱୀକାର କରାଇ
ଦେଲା ତାଙ୍କ ହୃଦ ଟାଳି ।
"କାହାକୁ ଇତର- ଧନେ ଧନେଶ୍ୱର
ହେବାକୁ ନବଳେ ଅଶା

କେ ସମ୍ପତ୍ତିବାନ ହେଲେହେଁ ତା ମନେ
ନ ବଢ଼ିବ ଧନ ତୃଷ୍ଣା ।
ସହଜେ ଅପର ଧନ ଲଭିବାର
ସୁଯୋଗ ହେଲେ ଅଗତ
ପାପ ଭୀତ ମନୁ ରଖାଇ ବଦୂରେ
କାରଇ ଧନାଶୀ ୧ଧୂର୍ତ୍ତି" ।
ପଣା କାଟି ମଧ୍ୟେ ଦ୍ୱାପର ଗୋପନେ
ରହିଣ ପ୍ରମୋଦ ଭରେ
ପୁଷ୍କର ବିଜୟ କରଣେ କାମନା
ରଖିଲା ନିଜ ଅନ୍ତରେ ।
"ଦୁର୍ଜ୍ଜନ ସଙ୍ଗମେ ସୁଗୁଣ ବିନାଶ
ହୋଇଯାଏ ଅବାରିତ
ଦୁଗ୍ଧ ପୂର୍ଣ୍ଣ ଭାଣ୍ଡେ ଗରଳ ନିକ୍ଷେପେ
(ହୁଏ) ଦୁଗ୍ଧ ବିଷେ ପରିଣତ । .
ଶରତ୍‌କାଳ ପୂର୍ଣ୍ଣ- ଚନ୍ଦ୍ର ଜ୍ୟୋତ୍ସ୍ନା ବଶେ
ପ୍ରଦ୍ୟୋତ ରହେ ଯେ ମହୀ
ବିଧୁ ନୁଦ ତାକୁ କରିଲେ ସ୍ମରଣ
ଅମାବାସ୍ୟା ନିଶା ହୋଇ" ।
ନଳ ଅଗେ ହୁଡ଼ି କଲେ ରାଜକୋଷ
ଧନ, ରତ୍ନାଦି ସହିତ
ନିଜେ ପରାଜିତ ହେବାରୁ ନିଯୁତ
ସର୍ବେ ଗଲେ ଭ୍ରାତା ହସ୍ତ ।

---

୧ କପଟୀ ।

ତଢତ ରାଜନ ଧାନ୍ୟାଦ ସମସ୍ତ
ହାରଣ ହେଲେ କ୍ଷୋଭିତ
ବଢ଼େ ବେଙ୍କ ବେଳ ପୁଷ୍କର ମହତ୍ତ୍ୱ
ଦ୍ୱାପର ଯୋଗୁଁ ନିଷ୍ଠିତ ।
ପତ୍ୱିଷଦଗଣେ ରହିଲେ ବିପକ୍ଷେ
ଜଣାଇଲେ ଦମୟନ୍ତୀ
ରାଣୀଙ୍କ ଉଦନ୍ତ- ମହତ୍ତ୍ୱ ନମାନି
ରାଜା ନ ତେଜିଲେ ରତ ।
କାହା ନିବାରଣ ନ ଶୁଣି ରାଜନ
ହାରିଲେ ସର୍ବ ସମ୍ପତ୍ତି
ଦୁର୍ଦ୍ଦଶା କାହାଣୀ ମୁଖେ ମୁଖେ ରଟି
ବଢ଼େ ଯଥା ୧ସ୍ରୋତସ୍ୱତୀ ।
ରାଜା ଦୁଷ୍ଟରତେ ରାଣୀ ଯେ ଦୁଃଖିତା
ଶୋକାକୁଳା ହେଲେ ବାରେ
ଭାବିଲେ ଦୁର୍ଦ୍ଦଶା- ବଶେ ନଳରାଜା
ରତ ହେଲେ ଅନାଗୃରେ ।
“ବିଶେଷ ଗୃହୀତ ମାନବ ଜଗତେ
ବିହ୍ୱର ରହେ ଅଜ୍ଞାଣ
କାହାର ସ୍ୱତନ୍ତ୍ର ନାହିଁ କେଉଁଥିରେ
ବାଳ-ଖେଳନା ସଦୃଶ ।
ସୁଜ୍ଞାନୀ, ଧାର୍ମିକ, ସାତ୍ତ୍ୱିକ ରାଜନ
କ୍ରୀଡ଼ନେ ହେଲେ ଅସକ୍ତ

---

୧ ନଦୀ

ବାହ୍ୟ-ବଶ ତାହା କୁହାଯିବ ସିନା
ଅତ୍ୟନ୍ତ ସେ ଅନିନ୍ଦ୍ୟ ତ ।
ଭବିଷ୍ୟତ ଚିନ୍ତା ସୁଜ୍ଞ ରାଣୀ ଶିରେ
ପ୍ରବେଶ କଲା ସେକ୍ଷଣି
କୁମାର, କୁମାରୀ ସୁଗତ ସୁମତି
କର୍ତ୍ତବ୍ୟ ନେଲେ ନିଦାନି ।
ଭାବିଲେ ବାପତି ପଶାଖେଳ୍ରୁଁ ଜାତ
ହୋଇପାରେ ଭବିଷ୍ୟତ
ନିଜ ପିତାଳୟେ ସନ୍ତାନ ପ୍ରେଷଣେ
ବଳାଇଲେ ତାଙ୍କ ଚିତ୍ତ ।
"ଦ୍ୟୂତ କ୍ରୀଡ଼ା ଏବଂ ମାଦକ ସେବନ
ସେବା କରାଏ ଉନ୍ମତ୍ତ
ସେ ଲୀଳା-ଅହିତ ମନୁଁ ଦୂରୀଭୂତ
କରାଇ ଦିଏ ନିଶ୍ଚିତ" ।
ପରିଣାମ ଫଳ ରାଣୀ ମନେ ଠିକ
ହେବାରୁ ହେଲେ ବ୍ୟଗ୍ରତା
ଉଭୟ ସନ୍ତାନ ହାରିବେ ବା ରାଣ
ଚିନ୍ତା ଘୁରାଇଲା ମଥା ।
ମନ୍ତ୍ରୀଙ୍କୁ ଡକାଇ କହିଲେ ଚତୁରୀ
ନିବର୍ତ୍ତାଅ ରାଜା ସର୍ବେ
ବେଳୁଁ ବେଳ ବଢ଼େ କ୍ରୀଡ଼ନ ଉନ୍ମାଦ
ରାଜା କିବା ଭିକ୍ଷୁ ହେବେ ।
ସେହି କାଳେ ରବ ହେଲା ନଳ ଧବ
ରାଜ୍ୟ ହାରି ଦେଲେ ଖେଳେ

ପୁଷ୍କର ପୁଷ୍କର- ଘନ ପରକାର
ପ୍ରଭାବ ବାଢ଼ିଲେ ପୁରେ ।
ବାର୍ଷ୍ଣେୟ ନାମକ ସୁଯୋଗ୍ୟ ସାରଥି
ଡକାଇଣ ଦମୟନ୍ତୀ
ଦେଲେ ଯେ ଅଦେଶ ଉଭୟ ସନ୍ତାନେ
ନେଇ ଛାଡ଼ ଭୀମ କଟ ।
ଶ୍ରେଷ୍ଠ ହୟ ଯୁତେ ରାଜା-ଯାନ ନେଇ
ରଖ ବିଦର୍ଭ ନଗରେ
ଯାନ ହୟ-ରକ୍ଷା ମୋ ପିତା ପାଳକେ
କରିନେବେ ସୁବିଗ୍ରହରେ ।
ସାଧ୍ୱୀ ସୁଚରିତା ରାଣୀ ଅଜ୍ଞା ପାଳି
ଚଳିଲା ସାରଥିବର
ଭୀମସେନ ରାଜେ ନୈଷଧ ଚଳଣି
କହିଲା ଅକ୍ଷରାକ୍ଷର ।
ଅଶଙ୍କା ବିହୀନ ପୁଷ୍କର ରାଜନ
ହେଲେ ନୈଷଧ ରାଜ୍ୟରେ
ପୁର-ପୁରେ ପୁର- ରାଜ ପରକାର
ସେ ବିଜେ ରାଜ ଗାଦିରେ ।
ମନ୍ତ୍ରୀଙ୍କ ଡ଼କାଇ ସୁ-ଗମ୍ଭୀର ସ୍ୱରେ
ରାଜାଜ୍ଞା କଲେ ପ୍ରଚାର
ରାଜ୍ୟଁ ୧ନିର୍ବାସିତ ନଳ ହେଲେ ବୋଲି
ଘୋଷଣା ଦିଅ ସତ୍ୱର ।

---

୧ ବହିଷ୍କୃତ

ସେ ଆଦେଶ ବାଣୀ ଶୁଣି ହୋଇ ଭୁନି
ପ୍ରବେଶି ସ୍ୱାମୀ ନିକଟେ
ବୋଲିନ୍ତି ଅଟଣ୍ୟ ତବ ରାଜଧାନୀ
. ହେଲ ଜାଣ ଏବେ ସ୍ପଷ୍ଟେ ।
ଥରେ ଦେବ-ଦୂତ ଆସି ମୋ ପ୍ରକୋଷ୍ଠେ
ଦେଲେ ଯେ ସଦୁପଦେଶ
ଦୃଢ଼ ସତୀ ପଣେ ତା ମୁଁ ହେଯ୍ଯୁଣ୍ଣନେ
ମଣିନେଲି ହେ ନରେଶ ।
"ବିଜୟ ପତାକା ସତ୍ୟ ଶିରେ ଉଡ଼େ
ଅସତ୍ୟର ପରାଜୟ—
କାଳିମା-କାଳିକା¹ ହୃଦୟ କେଦାର
ଜ୍ଞାନ-ଶସ୍ୟ କାଳମୟ (ଅଟେ) ।
ଦେବ-କୂଟ ବୋଲି ନ ଘେନ କଦାପି
ଉଭୟ ପରୀକ୍ଷା-କାଳ
ଉପଗତ ବୋଲି ଭାବିବା ଉଚିତ
ନ ହୋଇ ବାଚେ ବିକଳ ।
ସୁ-ଜ୍ଞାନ ବିବେକେ ଡ଼ର ହୋଇ ଜନ
ଭାସଇ ଅଜ୍ଞାନ-ସରେ
କାହା ବଶେ ସେହୁ ସ୍ୱଗୁଣ ବିସ୍ମରେ
କେ କହୁ ପାରିବ ସ୍ଥିରେ ।
ସୁକୃତୀ ସୁକୃତ ଅନ୍ଧ-ଯଷ୍ଟି ବତ
ଚଳାଏ ନଶ୍ୱର ଦେହୀ

¹ କଳାମେଘ

ବାଧି ବଶେ କାହିଁ ଉପୁଜିଲେ ଭ୍ରମ
ନାଦବେ ସୁକୃତେ କେହୁ" ।
ଅର୍ଦ୍ଧାଙ୍ଗିନୀ ତବ ମୁଁ ଜାଣେ ସର୍ବେ
ଅପଣ ୧ମିହିର ସମ
ଅତ ତେଜୀୟାନ ନୁହେ କି ୨ତପନ
କଦା ୩ବାରିଦେ ଗୋପନ ।
ବାଣୀ-ରାଣୀ ତବ ହୃଦ-ସିଂହାସନେ
୪ବାଚସ୍ପତି ତବ ମୁଖେ
ସତ୍ୟ ପ୍ରତିମୂର୍ତ୍ତି ଅଟ ତ ନୃପତି
ଧର୍ମେ କିଣ ତନୁ ଲେକେ ।
ତବେ ଅଶ୍ୱାସନା ଦେବାକୁ ସାମର୍ଥ୍ୟ
ନୁହେ ମୁଁ କରେ ସ୍ୱୀକାର
ସମ୍ପଦେ, ବିପଦେ ମୁଁ ଯେଣୁ ବାନ୍ଧବୀ
କହଇ ନୀତି ପ୍ରକର ।
ନିଷଧ ଅଧର୍ମେ ଅସତ୍ୟେ ପୂରିତ
ହେଲେ ଯେଣୁ କରେ ମତି
୫ନିବିଡ଼ କାନନେ ଗଜ, ମୃଗଗଣେ
.କରିନେବା ଅମ୍ଭ ସାଥି ।
ବିଶ୍ୱକର୍ତ୍ତା ବିଶ୍ୱ- ସରଜନା ବେଳେ
ଦ୍ୱେଷ, ହିଂସାଦି ଦୁର୍ଗୁଣେ
ନରଖି କାନନେ ଠୁଳେ ୬ଜନ-ପଦେ
ରଖିଲେ ସହର୍ଷ ମନେ ।

---

୧ ସୂର୍ଯ୍ୟ, ୨ ସୂର୍ଯ୍ୟ, ୩ ମେଘେ, ୪ ବୃହସ୍ପତି,
୫ ଘନ, ଗାଢ଼, ୬ ଦେଶେ

ଦୁର୍ଗୁଣ ଭଣ୍ଡାର    କେବଳ ନଗର
ନ ରହେ ତ ବନଦେଶେ
୧ଯମି, ତପ ଅଚ-    ରଣେ ପୂତ ସ୍ଥାନ
ତେଣୁ ସେବନ୍ତି ତପୀଶେ ।
ପ୍ରାଣେଶୀ ୨ଅମିୟ    ଗୀତ-ବାକ୍ୟଚୟ
ନଳ କର୍ଣ୍ଣେନ୍ଦ୍ରିୟେ ପାନ
କାନ୍ତରୁ ନିସ୍ତେଜ    ବଚନ୍ତ ଭ୍ରୁଦ
ହୋଇଲା ୩ଅଶନି ସମ ।
ବାସ, ବେଶ, ଭୂଷା    ବର୍ଜ୍ଜିନ ଦମୟନ୍ତି
ମନେ ଧ୍ୟାୟି ଦେବଗଣ
ଯୁଗ୍ମବସ୍ତ୍ରା ହୋଇ    ଚଳିଲେ ମାର୍ଗରେ
ହେଲେ ଦର୍ଶକେ ବିରସ ।
କେ ନିନ୍ଦେ ବିଧିକି    ଯେ ଦୟାନିଧିକି
ଛଡ଼ାଇ ନେଇ ନୈଷଧୁଁ
କାନନେ ପୂରାଇ    ରଖିଲେ ଦମୟନ୍ତି
କି ଲଭ ହେବ ତନ୍ମଧ୍ୟେ ।
କେ ବୋଲେ ପରାଣ,    ମାନଦାତା ବଂଶ
ହେଲେ ଯେବେ ନିର୍ବାସିତ
ତାହାଙ୍କ କାନନେ    ନ ଛାଡ଼ି ପଡ଼ନେ
ପ୍ରଜା ରଖିବା ବିହିତ ।
ପାପ-ତାପ ବୈରି    ନ ଥାଇ ରଜାଙ୍କ
ଭଲେ ସରବେ ପାଳନ

---

୧ ସଂଯମ, ୨ ଅମୃତ, ୩ ବଜ୍ର

ପ୍ରପୂଜ୍ୟ ଅତଥି ନକଲେ ସତ୍କାର
ପ୍ରଜା ନିନ୍ଦା ହେବ ଘନ ।
ଯଥାବଧି ପ୍ରବୋ- ଧନା ଦେଇ ନଳ
ପ୍ରସ୍ଥାନେ କଲେ ଉଦ୍ୟମ
ନର, ନାରୀ କୁଳ ହୋଇ ସମାକୁଳ
କଲେ ତାଙ୍କୁ ନିବାରଣ ।
ବାଧ ହୋଇ ଦୁହେଁ ରହିଲେ ନଗରେ
ହୋଇ ପୂର-ଜନାଶ୍ରିତ
ଗୁର ମୂର୍ଖ ଶୁଣି ପୁଷ୍କର ରାଜନ
ପ୍ରଗୁରେ ଅଜ୍ଞା ଝଟିତ ।
ଖାଦ୍ୟ ଦ୍ରବ୍ୟ ଯେହୁ କରବ ଯୋଗାଡ଼
ନଳେ ସତ୍କାର ଅର୍ଥେ
ରାଜ ଦଣ୍ଡେ ସେହୁ ଦଣ୍ଡିତ ହୋଇବେ
ଜାଣନ୍ତୁ ସରବେ ସତ୍ୟେ ।
କ୍ରୂର-ନରାଧମ ଅଦେଶ ବନ୍ଧନୀ
ଜନେ ବାନ୍ଧିଲା ସୁଦୃଢ଼େ
ନଳ-ଦମୟନ୍ତୀ କୋମଳ ହୃଦୟେ
କ୍ଷୁଧାବାଧା ତେଣୁ ବଢ଼େ ।
୧ଇତସ୍ତତଃ ବୁଲି ଶାକ, ଫଳ ମୂଳ
ନଳ କଲେ ୨ଅନ୍ୱେଷଣ
ତନୀ ଧନ ପୁର ଉପାନ୍ତେ ରାଜନ
କଲେ ମନେ ମାତ୍ର କ୍ଷୀଣ ।

---

୧ ଏଣେତେଣେ ୨ ଖୋଜିଲେ

ପାଳକ ପାଳିତ ଅଟେ ହୀନମତେ
ରହିବା ଅଟଇ ଅଶ୍ରେୟ
ବରଂ ବନ ମଧ୍ୟେ ଅଜ୍ଞାତେ ରହିବା
ମଣିଲେ ସେ ବହୁ ଶ୍ରେୟ ।
ମାତ୍ର ସ୍ଥିରକୃତ କରନେଇ ଦୁହେଁ
ଚଳିଲେ ବନାଭିମୁଖେ
ଗମନେ ଅଶକ୍ତ କ୍ରମଶଃ ସେ ହେଲେ
ରହିବାରୁ କ୍ଷୁଧା-ଦୁଃଖେ ।



## ନବମ ସର୍ଗ

ଦେଖିଲେ ପଥରେ କପୋତ, କପୋତୀ
ବିହରନ୍ତ ଏଣେ ତେଣେ
ମାଂସ ଆଶା କରି ନଳ ଦଣ୍ଡଧାରୀ
ଲଗିଲେ ୧ଅନୁଧାବନେ ।
"କ୍ଷୁଧାତୁର ଜନ ରୁଚି, ପକ୍ୱାହାର
ନ ଲୋଡ଼ଇ ହେଲେ ବେଳେ
କରଗତ ଖାଦ୍ୟ କରଇ ଆହାର
ନିର୍ବାପଣେ କ୍ଷୁଧାନଳେ ।"
ଦୈବୀ ବଣେ ପକ୍ଷୀ ଧୀର ଧୀର ଚଳି
ଭ୍ରମାଇ ନେଇ ନଳଙ୍କୁ
ତାଙ୍କ ମନୋଦ୍ୱେଗ ବର୍ଦ୍ଧନେ ସବେଗ
କଲେ ବା ଅସେ ମନକୁ ।

---

୧ ପଶ୍ଚାତ୍‌ଦଉଡ଼ିବା

କୃତକାର୍ଯ୍ୟ ଅଶା ପୋଷିଣ ନରେଶ
ନିଜ ପରିଧାନ ଖଣ୍ଡି
ଫିଙ୍ଗିଲେ ତଦ୍ୱାର ଏକ ପକ୍ଷୀ ହେଲେ
ଧରିବେ ପରି ଦରାଣ୍ଡି ।
ଚଞ୍ଚୁପୁଟେ ବାସ ଧରି ପକ୍ଷିବେଳ
ଚଳିଲେ ଅପର ପଥେ
ଭରସା ଦୁର୍ଦ୍ଦଶା ନଳେ ଜନମାଇ
ରହିଲା ତାଙ୍କ ବିବସ୍ତ୍ରେ ।
"ଦୁରାଶା, ଦୁର୍ଦ୍ଦଶା ହୋଇ ସତୀ-ପତ୍ନୀ
ହେଲେ ବା ନଳ ସଙ୍ଗିନୀ
ପ୍ରଥମ ପୂରତେ ଦ୍ୱିତୀୟ ପଶ୍ଚାତେ
କୌତୁକେ ଗୃଳନ୍ତ ବେଳ ।"
ପିନ୍ଧି ଉତ୍ତରୀୟ ନ ଘୋଡ଼ାଇ କାୟ
ଗଲେ ଦମୟନ୍ତୀ ପାଶେ
ଚଳଣି ବୃତ୍ତାନ୍ତ କଲେ ଦୁଃଖେ ଅନ୍ତ
ଅଶେଷ ସେ ନମି ଲାଜେ ।
ସେ କାଳେ ଶୁଭିଲା ଯେ ଶୂନ୍ୟ ବଚନ
ଦ୍ୱାପର ଯେ ଛଦ୍ମବଶ
ହରି ନେଲା ବାସ ଜାଣ ନରଈଶ
ଭୋଗିବ ଅଶେଷ କ୍ଳେଶ ।
ପୁଷ୍କର ସାହାଯ୍ୟେ ପଶାକାଠି ମଧ୍ୟେ
ରହିଥିଲା ସେ ଗୋପନେ

ଦାନେ ତାଙ୍କ ଜାତା ସେ ନେଇ ଉଥିଇ
ହରାଇ ଦେଲ ଅପଣେ ।
ନିଜ ଦୁରବସ୍ଥା ଦେଖି ଗୁଣୀ ରାଜା
ନୋହୁ ମାନସେ ବିଷାଦ
ଭାରଯା ସମୀପେ ହୋଇ ଉପଗତ
କହୁଲେ ଖୋଲିଣ ହୃଦ ।
ଅଗତ ଦୁର୍ଦ୍ଦଶା ଦୃଷ୍ଟି ଲକ୍ଷ୍ୟେ ରାଜା
ପ୍ରବୋଧିଲେ ପ୍ରାଣପ୍ରିୟେ
ସୁକୋମଳା ବନ- ବାସ କ୍ଲେଶ ସହ୍ୟ
କରିବା କଷ୍ଟ ମୁଁ କହେ ।
ତବ ପିତ୍ରାଳୟେ ୧ବିଡପସ୍ଥ ଦନ
କାଟିନିଅ ଯୋଷାମଣି
ଦୁର୍ବିପାକୁଁ ପାର ମୁଁ ହେଲେ ନିଜର
ଭେଟିବି ସେଠାରେ ପୁଣି ।
କହୁ କହୁ ସେହୁ ବିଦର୍ଭ-ସରଣୀ୨
ଦେଖାନ୍ତ ବହୁ ଅଦର
ସେ ରୀତ ଦର୍ଶନେ ଦମୟନ୍ତୀ ମନେ
ଶଙ୍କା ଜନ୍ମିଲ ଅପାର ।
ସେ ଭାବିଲେ ନଳ ତାଙ୍କ ପରିତ୍ୟାଗେ
କରିଣ ନେଲେ ବିଗୁର
ଶୋକାକୁଳା ହୋଇ ଦୈନ୍ୟେ ଦେଲେ କହୁ
ସ୍ୱାମୀ କର ସୁବିଗ୍ଭର ।

---

୧ ବୈଡେକ, ୨ ମାର୍ଗ

ମୋ ପ୍ରାଣ ସର୍ବସ୍ୱ ଆପଣ ଅବଶ୍ୟ
ମୁଁ ଅଟଇ ଅର୍ଦ୍ଧାଙ୍ଗିନୀ
କ୍ଳେଶେ ମୁଁ ଭଗିନୀ ନ ହେଲେ ପାପିନୀ
ନିଷ୍ଟେ ଗଣିବେ ସୁଜ୍ଞାନୀ ।
ନାହାନ୍ତି ୧ସଚିବେ ନାହାନ୍ତି ବାନ୍ଧବେ
ନାହାନ୍ତି ୨ପରିଚାରକ
ପରାମର୍ଶ ଦାନେ ୩ଶୁଶ୍ରୂଷା କରଣେ
କେ ଅଛୁ ସମୀପେ ଲୋକ ।
ଆପତ୍‌କାଳେ ଆପ୍ତ- ଜନ ୪ସମାବେଶ
ଅଟଇ ଯେ ଦୃଢକର
ଦୁଃଖାପନୋଦନେ ଧଇର୍ଯ୍ୟ ପ୍ରଦାନେ
ସଙ୍ଗୀ ଥିବା ଦରକାର ।
ମୁଁ ତ ଦାସୀ ପଣେ କି ଅବା ମନ୍ତ୍ରଣେ
ଅଯୋଗ୍ୟା ନୁହଇ ବାରେ
ମୁଁ ହେବି ସଙ୍ଗିନୀ ତବ ମନ ଜାଣି
ସେବୁଥିବି ଅନୁକ୍ଷଣରେ ।
କହୁଲେ ଅବର ପ୍ରାଣ-ଧନ ମୋର
ମନେ ଚିନ୍ତ କି ଅପାୟ
ସଙ୍ଗିନୀ ତୁମ୍ଭର ଥିଲେ ସଙ୍ଗେ ମୋର
ନ ହେବଇ ସଦୁପାୟ ।
ପିତ୍ରାଳୟେ ମତେ ୫ପ୍ରେରଣ ନିମନ୍ତେ
କର ଯେବେ ମନେ ସ୍ଥିର

---

୧ ମନ୍ତ୍ରିମାନେ, ୨ ସେବକ, ୩ ସେବା, ୪ ଏକତ୍ର ରହିବା
୫ ପଠାଇବାର

ମୋ ସଙ୍ଗେ ଅପଣ ସଙ୍ଗୀ ହେଲେ ଜାଣ
ସୁଖିନୀ ହେବ ନୀଙ୍କର ।
ଅମ୍ଭର ସନ୍ତାନେ ଅଛନ୍ତି ସେ ସ୍ଥାନେ
ଦେଖି ତାଙ୍କୁ ଦୁଃଖ ଘଣି
ବନ୍ଧୁଗଣ ଗଣଙ୍କୁ ହୋଇବେ ୧ବିଲୟୁ
କି କହିବ ବାଞ୍ଛେ ବେଣି ।
ଭୀମ ନରପତି ଅଶିଷ୍ଟ, ଦୁର୍ମ୍ମତି
ନ ହେଉ ତେଣୁ ଗୁମାନ
ଆସ୍ମୀୟ ନରେଶ ତବେ ସୁର୍ଣ୍ଣ-ଦାନେ
ନୀରବେ ଥିବେ ନିମଗ୍ନ ।
ଯୁକ୍ତି, ତର୍କ ବଳେ କହିଲେ ଯେ ନଳ
ଭୀମ ହେଲେହେଁ ସୁଶୀଳ
ଅନୁଚରଗଣେ ଶିଷ୍ଟତା ଯୁକତେ
ରହିବା ମାତ୍ର ୨ବିରଳ ।
"ସମ୍ପତ୍ତିକାଳେ ଯେହ୍ନ କରେ ସମାଦର
ବିପତ୍ତିକାଳେ ଅନାଦର
କରଇ ଯେମନ୍ତ ମଧୁପେ ବର୍ଜିତ
ଯେ ୩ପର୍ଯ୍ୟୁଷିତ କମଳ ।
ଦୁରଦୃଷ୍ଟ ଭୋଗେ କ୍ଷୀଣଚନ୍ଦ୍ର ଯୋଗେ
ରହେ ନର ଅବିରତ
ଜନ ସମାଗମେ ସେ ଚନ୍ଦ୍ର ବିଲୟୁ
ହୁଏ ତା ମାତ୍ର ନିଷ୍ଠିତ ।

---

୧ ବିନାଶ, ୨ ଅଳ୍ପ, ୩ ବାସି,

ଲକ୍ଷ୍ମୀବନ୍ତ ନର ଜଗତେ ଅଦର
ପାନ୍ତ ହୋଇଥାଏ ସିନା
ଲକ୍ଷ୍ମୀ ଅନାଦରେ ଠେଲା ପରଦ୍ୱାରେ
ହୁଏ ସେ ସମାଜେ ଗଣା” ।
ସ୍ୱୟଂବର କାଳ ଅଡ଼ମ୍ବର ଜାଲ
ଦର୍ଶକେ ପକାଇ ମନେ
ନାସିକା୧ କୁଞ୍ଚନ କରିବେ କଦାନ
ସେ ନଳେ ଦେଖି ଏକ୍ଷଣେ ।
ସୁକୁମାରୀ କେମା ସହିବେ ଯାତନା
ମେ ଚିନ୍ତା ନଳ-ମାନସେ
୨ବିଷଧର-ବିଷ ସମାନ ସର୍ବାଙ୍ଗେ
ପ୍ରସର ରହେ ଅବଶେ ।
ଇତ୍ଥମ୍ଭୂତ ବେଦନା- ୩ଧର୍ଷିତ ରାଜନ
ପ୍ରିୟା ପରିତ୍ୟାଗ କାମ
ମନ-କ୍ଷେତ୍ରେ ରୋପି ଅନ୍ତେ ସନ୍ତାପିତ
ହେଉଥିଲେ ଅନୁକ୍ଷଣ ।
ସେ କାଳେ ତପନ ଭ୍ରମଣୁଁ ବିରତ
ଛୁଇଁଲେ ଯେ ଅସ୍ତଗିରି
୪ଗୈରିକ, କନକ ବରନ ବସନ
ଆକାଶେ ଦେଲେ ବିସ୍ତାରି ।
ପ୍ରଦୋଷ ରମଣୀ ଇଚ୍ଛା ଅନୁକୂଳ୍ୟ
ବାସନ ଯେ ନେବେ ବାଛି

୧ ନାକଢ଼ିଅଁ, ୨ ସର୍ପ, ୩ ପରାଭବପ୍ରାପ୍ତ, ୪ ଗେରୁଆ

ହୋଇଣ ସୁବେଶ ମୋହନେବେ ବିଶ୍ୱ
ବଢ଼ାଇ ସ୍ୱ-ଅଭିରୁଚି ।
ବିଶେଷ ଆଦରେ ବିହଙ୍ଗ ନିକରେ
୧କୂଜନ କଲେ ଅପାର
ପ୍ରଦୋଷ ଯାମିନୀ ଅଭ୍ୟର୍ଥନା ବାଣୀ
ରସାରେ କଲେ ପ୍ରଚାର ।
ଦିନପତି ସ୍ଥାନ ଗତିକା ନିଦାନ
ସାଧ୍ୱୀ ଶିରୋମଣି ଦିବା
ନିଜ ଦୁର୍ବଳତା ବଶେ ସେ ଦୁଃଖିତା
ହୋଇ ଲୁଚିଗଲା କିବା ।
ଚକୋର ଦମ୍ପତି କଲେ ତୋଷମତି
ଶତ୍ରୁ ଅପଜୟ ଜାଣି
ବୁଲି ଚତୁର୍ଦ୍ଦିଗେ ଚହଲେ ସରାଗେ
ଯଥା ବିଜୟୀ ସେନାନୀ ।
କାଳ ଜାଣି ଦୁହେଁ ବିଶ୍ରାମୋପଯୋଗୀ
ସ୍ଥାନ ଦେଖି ବୁଲୁଥିଲେ
୨ସଇକତମୟ ଅସ୍ଥାନ ଦର୍ଶନେ
ମନେ ପରିତୋଷ ହେଲେ ।
୩ଅରଣ୍ୟାନୀ ମଧ୍ୟେ ସେ ସ୍ଥଳ ଦର୍ଶନେ
ଭାବିଲେ ଅତୃପ୍ତ ଚିତ୍ତେ
ଅରକ୍ଷ ପରାଣୀ ସାନ୍ତ୍ୱନା କାରଣେ
ପ୍ରସ୍ଥା ବା ରଖନ୍ତି ପଥେ ।

---

୧ ନିନାଦ, ୨ ବାଲୁକା, ୩ ମହାରଣ୍ୟ

ଦମ୍ପତି ସେଠାରେ ରହିଲେ ନିଶୀରେ
ଅନୁଭୂତ କ୍ଲେଶ ସ୍ମରି
"ସମ୍ଭାଳିଲେ ଦୂର ବିପଦେ ବାନ୍ଧବ"
ଚିନ୍ତି ନେଲେ ଦେବ ହରି ।
ସୁଦିବ୍ୟ ପଲଙ୍କେ କୋମଳ ତଳପେ
ନୃହନ୍ତି ନିଦ୍ରାଭିଭୂତା
ଯେହ୍ନେ ଦମୟନ୍ତୀ ଭୂ-ଶଯ୍ୟା ପତିତା
ସେକଥେ ହେଲେ ନିଦ୍ରିତା ।
"କ୍ଲେଶେ ପ୍ରପୀଡ଼ିତ- ହୃଦେ ବିମୋହିତ
ନିଦ୍ରା ଧଏ ନିଦ୍ରା ଦେବୀ
ଦଗ୍ଧ ଅନ୍ତରସ୍ଥା ସୁଶାନ୍ତ କରଣେ
ସେ ୧ଘନ ଉପାୟ ଭାବି" ।
ପ୍ରିୟାଙ୍କ ୨ସଂବେଶ ଦେଖି ପ୍ରାଣେଶ
ମନସ୍କାମ ସୁମରଣ
ପାଶେ ଉପଗତ ହୋଇ ସେ ଦେଖିଲେ
ତାଙ୍କ ଶଶାଙ୍କ-ବଦନ ।
ପ୍ରିୟା ପ୍ରେମ-ଗୁଣ ଭାବି ସେ ରାଜନ
ଥିଲେ ବିଚ୍ଛେଦେ ୩ବିରତ
ଖଳ-କଳୀ ବଳେ ବିଭଳେ ରହିବା
ଭାବିନେଲେ ମନେ ହିତ ।
ରାଣୀ ପରଧେୟ ବସନ୍ତୁଁ ଖଣ୍ଡିଏ
କାଟିବାକୁ କଲେ ମନ

---

୧ ବଡ଼, ୨ ନିଦ୍ରା, ୩ କ୍ଷାନ୍ତ

ଶସ୍ତ୍ର ଅନ୍ୱେଷଣେ ରୌଦ୍ରଗେ ବହନ
କରନେଲେ ନିସ୍ୱଷଣ ।
ଦ୍ୱାପର ନିଦାନ ମତ୍ତ ସେହୁକ୍ଷଣି
ଅଦୃଶ୍ୟେ ଗୋଟିଏ ଛୁରୀ
ରଖିଦେଲା ପାଶେ ତା ଦେଖି ନରେଶ
ତୃପ୍ତ ହେଲେ ମନେ ଭାବି ।
ତଦ୍ୱାରା ବିଚ୍ଛିନ୍ନ କରିଣ ବସନ
କର୍ପଟ ନେଲେ ପଛୁରି
ବିଧି ବିଧାନ ଯେ ଅଲଂଘ୍ୟ ନିଦାନ
ଗଲେ ତାହୁ ଅନୁସରି ।
ନିଜପ୍ରାଣ ସମେ ଯେ ଥିଲେ ଭବନେ
ବନେ ଛାଡ଼ି ଏକାକିନୀ
ତାହାଙ୍କ ଦୁର୍ଗତି ନ ନେଲେ ସେ ଚିନ୍ତି
ରକ୍ଷକ-ବିଶ୍ୱେଶ-ଧ୍ୟାନି ।

## ଦଶମ ସର୍ଗ

କିଛି କାଳ ପରେ ସଞ୍ଜ୍ଞା ଲଭି ରାଣୀ
ଦେଖିଲେ ନାହାନ୍ତି ନାଥ
ବୋଲି ନାଥ, ନାଥ ବକ୍ଷେ ମାରି ହାତ
ବେଢ଼ିଲେ ଅପରମିତ ।
ବାତାହତ ତରୁ ପରିଏ ତରୁଣୀ
ହୋଇଲେ ଧରା ପତିତା

କିଛି କାଳ ପରେ ସଚେତ ସେ ହୋଇ
ହୋଇଲେ କନ୍ଦନେ ରତା ।
ଯେଣିକି ଦେଖିଲେ ନଳ ପ୍ରତିମୂର୍ତ୍ତି
ଦିଶୁଥାଏ ଛନ ଛନ
ତରୁ ଲତା କିବା ଧରି ନଳ ଶୋଭା
ସମ୍ମୁଖେ ଉପବେଶନ ।
ଦିଶୁଥାନ୍ତି ନଳ ଡ଼ାକିଲେ ବାକିଲେ
ନ ମିଳେ ପ୍ରତି ଉତ୍ତର
ଅନ୍ଧକାରମୟ ଦିଶିଲା ଧରଣୀ
(ଗଲା) କର୍ତ୍ତବ୍ୟ ଜ୍ଞାନ ବିଦୂର ।
"ଦେଖୁଁ ଦେଖୁଁ ନିଶା ହେଲା ୧ଅବସାନ
ବହିଲା ୨ଉଷା-ସମୀର୩
ଧୀର ଧୀର ଶୀତ- ହିମ ସମ୍ପୃକ୍ତ
କଲେ ଈଶ୍ୱର ବାହାର ।
ଶୀତ ବାୟୁ ଗାଏ ଉତ୍ତାପ ନାଶିଲା
କୁଳାୟ ତେଜି ପତତ୍ରୀ
୪କୂଜନ କଲାରୁ ମନ ବିମୋହିତ
ହେଲା ସରବେ ଧରିତ୍ରୀ ।"
ସମୀର ଅଶ୍ୱାସ ୫ବିହଗ ନିଃସ୍ୱନ
ଶିଖାଇଲା ଦମୟନ୍ତୀ
"ଯଥା କାଳେ ଜୀବେ ସୁଖେ, ଦୁଃଖେ ମାତି
ବିହରିବେ ବସୁମତୀ ।"

---

୧ ଶେଷ, ୨ ପ୍ରଭାତ, ୩ ପବନ, ୪ ପକ୍ଷିରବ, ୫ ପକ୍ଷୀ;

୧ଉପଦେଷ୍ଟା ଦୃଷ୍ଟି ଗୋଚରେ ନ ଆସି
ଜୀବରଶ୍ମି ଅଷ୍ଟାସନ୍ତ
ଉପଦେଶ ମାନ ସୂଚନ୍ତି ସ୍ୱ-ବାଣୀ
୨ଉତ୍କଣ୍ଠିତା ସେ ନୁହନ୍ତ ।
ମୁଁ ନଳ ନାମ ନୁହେ ନିବାରଣ
ହୁଏ ସ୍ୱେଚ୍ଛା ବହିର୍ଗତ
"ଆଜନ୍ମ ଯଥା ଦେହ ଅନ୍ତରଙ୍ଗ ସ୍ୱତ
ନଳ ନାମଟି ଉଦ୍‌ଗତ" ।
ଭୀଷଣ ଆକାର ଏକ ଅଜଗର
ବାଣୀ ଶୁଣନ୍ତେ ହାକର
ହୁଅନ୍ତେ ପୂଛିଲେ ନଳଙ୍କୁ ପ୍ରତ୍ୟକ୍ଷେ
ଦେଖିଲ କି ନାଗବର ।
ନ ଦେଇ ଉତ୍ତର ସେ ଯାଇ ପ୍ରଖର
ଗିଳିଲା ଯେ ବହୁଜନୀ
ନଳ ଥିଲେ ସ୍ୱଣୀ ଦୁର୍ଗତ ନୁହନ୍ତା
ଝଡ଼ ନେଲେ ଗୁଣ ଗୁଣି ।
ଚକ୍ଷାଙ୍କର ନଳ ଡ଼ାକ ସମଗର
ବନଦେଶେ ଗଲା ବ୍ୟାପି
ପ୍ରତିଧ୍ୱନି ଶୁଣି ବନ-ଜୀବ ଶ୍ରେଣୀ
୪ହେରିଲେ ଚୌଦିଗେ ଛପି ।
ଧନୁ-ଶର, ଛୁରୀ ହସ୍ତେ ଧରିକର
ବ୍ୟାଧ ବୁଲୁଥିଲା ବନେ

୧ ଶିକ୍ଷାଦାତା, ୨ ଉଦ୍‌ବିଗ୍ନା, ୩ ହାସ୍ୟ, ୪ ଦେଖିଲେ

ସ୍ୱନ ଧରେ ପ୍ରଧା- ବିତ ହୋଇ ସେହୁ
ନାସ୍ତି ଦୁର୍ଦ୍ଦଶା ମୋଚନେ ।
ଅବିଲମ୍ବେ ଛୁଟି କଲି ସେ ପ୍ରୟୋଗ
ଚିରଧେଲି ଅଜଗର
ତା'ର ବିନାଶନେ ନାସ୍ତି ଉଦ୍ଧାରଣେ
ସାଧନା କଲି ନିକର ।
ସୁକୋମଳା ବାଳୀ ଦେଖି ହୋଇ ଭୋଳ
କରିଣ ଯଥା ଶୁଶ୍ରୂଷା
ଅଙ୍ଗ ପ୍ରତିଅଙ୍ଗ ସ୍ୱଚ୍ଛ ନିରୀକ୍ଷଣେ
କାମାର୍ତ୍ତି ହେଲି ସହସା ।
ବିବିକ୍ତ କାନନେ ଶରଚନ୍ଦ୍ରାନନା
ପଡ଼ିବାରୁ ନେତ୍ର ପଥେ
"ମାନସ କୁମୁଦ ତା ହୋଇ ପ୍ରମୋଦ
ହେଲେ ରହେ ବିକଶିତେ ।
ଦୁରିଶାରୁ ଜାତ ହେଲି ମତିଭ୍ରମ
ପରେ ଇନ୍ଦ୍ରିୟ ଲାଳସା
ବସା କରି ତାକୁ କଲି ବ୍ୟାକୁଳିତ
ସେ ଭଲି ତା ପ୍ରେମେ ଅଶା" ।
ସେ ଭାବନା ଗୁରୁ ହେବାରୁ ହୃଦରୁ
ବହିର୍ଗତ ହେଲି ତ୍ୱରେ
ଅଭିବ୍ୟକ୍ତ କଲି ମନସ୍କାମ ତାର
ପ୍ରତ୍ୟାଶାପୂର୍ଣ୍ଣ ହୃଦରେ ।

ଉପକୃତା ଯେଣୁ          ରାଣୀ ତା ଜନାଶେ
ମନ ନ କଲେ ପ୍ରଥମେ
କାନନେ ମିଳନ          ଜନ ଶୂନ୍ୟ ସ୍ଥାନ
ଦେଖି ବିଚାରିଲେ ମନେ ।
ଧର୍ମ ନ ଲଙ୍ଘିଲେ          ମୋ ସତୀତ୍ୱ ରତ୍ନ
ସେ କରିନେବ ହରଣି
ଅପାହାଯ୍ୟା, ହୀନା          ଶରଣ କେବଳ
ଅଚିନ୍ତ୍ୟ ଯେ ଭଗବାନ ।
ନିଜେ ଶମ୍ଭୁ ହୋଇ          ୧ଲୁବ୍ଧକ କନ୍ଦର୍ପେ
ନିକ୍ଷେପି ଦୃଷ୍ଟି ଅନଳ
୨ବିଭୂତ ତାହାକୁ          କଲେ ବୁଦ୍ଧିମତୀ
ସତୀତ୍ୱ କରଣ ମୂଳ ।
ଦୁର୍ଦ୍ଦଶାରୁ ପାର          ହୋଇ ବାମାବର
ଫେରିଲେ ଗହନ ବନେ
ସୁରମ୍ୟ ମନ୍ଦିର          ନୟନ ଗୋଚରେ
ରହିଲା ଯେ ତତକ୍ଷଣେ ।
ଦେଖିଲେ ୩ତାପସେ          ରହି ସେ ଆବାସେ
ଅନୁରକ୍ତ ନିଜ କର୍ମେ
ପ୍ରଶ୍ନ କଲେ ତାଙ୍କୁ          ଦେଖିଛ କି ବାରୁ
ବନେ ନିଷଧ ରାଜନେ ।
ଜ୍ଞାନ ଦୃଷ୍ଟି ବର୍ତ୍ତେ          ସେ ଜାଣି ସମସ୍ତ
କହିଲେ ହେ ଦମୟନ୍ତୀ

---

୧ ବ୍ୟାଧ, ୨ ପାଁଶ, ୩ ତପିମାନେ

ଅଚିରେ ଲଭିବ ତୁମ୍ଭେ ନିଜପତି
ଅବିର ସର୍ବ ବିଭୂତି ।
"ଘଟନା ଦର୍ଶନେ ଭାବ ଅସେ ମନେ
ଭାବ-ଗ୍ରାହ୍ୟ ଅଗୋଚରରେ
ଚିହ୍ନିଲେ ହେଲେହେଁ କପଟ ବେଶରେ
ସାନ୍ତ୍ୱନା ଦିଅନ୍ତି ବାରେ" ।
ପରକ୍ଷଣେ ବାଣୀ ବିବିଧ ପ୍ରଶନ
କରଣେ ହୋଇ ମନସ୍ଥ
ଦେଖିଲେ ସେଠାରେ ନାହାନ୍ତି କେ ତହିଁ
ସର୍ବେ ହେଲେ ଅନ୍ତର୍ହିତ ।
କରୁଣା-ସ୍ରୋତେ ସେ ଗଲେ ଭାସି ଭାସି
ମିଳିଲେ ଅଶୋକ ମୂଳେ
ନାମ ସ୍ୱାର୍ଥ କରି ସେ କଥା ବୋଇଲେ
କାହିଁ ନଳ ନୃପ ଗଲେ ।
ଯିବ ମୋର ଶୋକ ତୁମ୍ଭର ଅଶୋକ
ନାମ ହେବାର ସାର୍ଥକ
ହେବ ବୋଲି କହେ ମୋତେ ପ୍ରୀତି ରହି
କର ମୋ ପ୍ରାର୍ଥନା ଠିକ ।
ଶୋକ ବିନାଶକ ଅଶୋକେ ବିବେକ
କରିନେଇ ବୁଧ ଜନ
ଚୈତ୍ର ସିତାଷ୍ଟମୀ ଦିନେ ଅଷ୍ଟ ସଙ୍ଖ୍ୟା
କୋରକ କରେ ସେବନ ।

ଉତ୍ତର ନ ଲଭି     ରମଣୀ ରତନ
ଚଳିଗଲେ ସେ ସ୍ଥାନରୁ
ମାର୍ଗେ ବଣିଜାରୁ     ଦଳ ଭେଟି ଦୂରୁଁ
ଡାକିଲେ ତାଙ୍କୁ ଯତ୍ନରୁ ।
୧ମହୀଧରେ, ୨କନ୍ଦରେ     ୩ଉତ୍ସ, ୪ଗୁଲ୍ମାଦ୍ଧରେ
ଭ୍ରମୁଥିଲେ ଅନାହାରେ
କ୍ଷୀଣା, ଭୂଷାହୀନା     ନଳ-ମନୋରମା
ଦିଶୁଥାନ୍ତି ୫କିମାକାରେ ।
ବଣିକ ସମାଜୁଁ     କେବୋଲେ ଡାକିନୀ
କେ କହେ ସେ ପିଶାଚିନୀ
ବଣିକଙ୍କ ଛତ     ମନେ ନେଇ ଚିନ୍ତି
ଅଚିନ୍ତ୍ୟ ପ୍ରସ୍ଥ ଗାମିନୀ ।
କହି କହି ସବେ     ଗଲେ ଇତଃସ୍ତତଃ
ହୋଇ ଭୟ ବିଜଡ଼ିତ
ମାନସ ବିକଳେ     ଦେବ, ଦେବୀକୁଳେ
ଚିନ୍ତାରେ ନୋହି ବିରତ ।
ସଙ୍କଟ ଅଗମେ     ସଙ୍କଟୋଦ୍ଧାରିଣୀ
ଚିନ୍ତିଲେ ବଣିକଦଳ
କେହି କେହି ନାମ     କରି ଉଚ୍ଚାରଣ
ଦୌଡ଼ିଲେ ହୋଇ ବିକଳ ।
ବଣିକଙ୍କ ଗତି,     ମତି ନେଇ ଚିନ୍ତି
ବିବେକିନୀ ସୁଚତୁରୀ

---

୧ ପର୍ବତେ, ୨ ଗୁହାରେ, ୩ ଝରଣାରେ, ୪ ଖଣ୍ଡ୍ରନଟାଦିରେ,
୫ କି ପ୍ରକାରେ

ଅଶ୍ୱାସନା ବାକ୍ୟେ ସମ୍ବୋଧନ କରି
କହିଲେ ମୁଁ ସ୍ୱାମୀ ନାହିଁ ।
ପ୍ରାଣପ୍ରିୟ କାନ୍ତ ହରାଇ ୧କାନ୍ତାରେ
ବୁଲେ ପାଗଳିନୀ ପ୍ରାୟ
ମୋ ବେଶେ ବଣିକେ ସନ୍ଦିଗ୍ଧ ହେବା ଦେଖି
ମାଗେ ତବ କ୍ଷମାଚୟ ।
ଶିଷ୍ଟ, ମିଷ୍ଟ ବାକ୍ୟ ଶୁଣିଣ ବଣିକେ
କଲେ ଭୟାପନୋଦନ
ରମଣୀ ରତନ ଅପେକ୍ଷା କରଣେ
ସ୍ଥଗିତେ ରହିଲେ ପୁଣ ।
ଦମୟନ୍ତୀ ମିଣ୍ଟି କହିଲେ ବୃତ୍ତାନ୍ତ
ନିଜ ଦୁର୍ଗତି କାହାଣୀ
ପୂର୍ବ ଘଟିବେ ଶୁଣି ବଣିକାଦି ଶ୍ରେଣୀ
୨ବିସ୍ମିତ ହେଲେ ସେକ୍ଷଣି ।
କହନ୍ତି ଅକାର ପ୍ରକାର ତୋହର
ଜଣାନ୍ତି ତୁ ଭାଗ୍ୟବତୀ
କ ଦୁର୍ଦ୍ଦଶା ବଶେ ତୁ ହୋଇ ନିର୍ମାଣୀ
ଫେରୁ ତୁ ଅରକ୍ଷା ଏଥି ।
ବର୍ଜି ଶିଷ୍ଟାଗ୍ରହ ନ ଦେଇ ଉତ୍ତର
ମୌନେ ରହି କତକ୍ଷଣ
ଭାବିଲେ ଅନ୍ତରେ ମିଥ୍ୟା ଭାଷା ଡରେ
ସେ ନ କରିବେ ବ୍ୟାଖ୍ୟାନ

---

୧ ବଣରେ, ୨ ଅଶ୍ଚର୍ଯାନ୍ୱିତ

ପୃଚ୍ଛନେଲେ ନାଗ୍ରୀ କୋ ଦେଶେ ବେପାରୀ
ଯାଉଛ ତ ଦଳବନ୍ଧେ
ଦଳପତି କହେ ସର୍ବେ ବାଣିଜ୍ୟାର୍ଥେ
ଯାଉଁ ଚେଦି-ପୁରେ ମୁଦେ ।

ଯହିଁ ନରବର ସୁବାହୁ ସୁନ୍ଦର
ଶାନ୍ତ, ଶିଷ୍ଟ, ପ୍ରଜାପୋଷୀ
ଅରି-କୁଳ-କାଳ ନୃପତି ନାଗର
ସଜ୍ଜନ-ଗଗନେ ଶଶୀ ।

ପ୍ରତାରକେ ରାଜ୍ୟେ ରହନ୍ତି ଅଦୃଶ୍ୟେ
ଦୁରାଗ୍ରହହୀନ ପୁରେ
ବେପାର ସ୍ୱଚ୍ଛନ୍ଦେ ଚଳିବ ସେ ଭାବେ
ଯାଉଛୁ ଲଭ ଆଶାରେ ।

ରାଣୀ ରାଜା ଗୁଣ ବର୍ଣ୍ଣନା ଶୁଣିଣ
ବୋଇଲେ ମୋତେ ସଙ୍ଗତେ
ନେଲେ ଉପକୃତ ମୁଁ ହେବ ବହୁତ
ନ ଲୋଡ଼େ କିଛିହିଁ ପଥେ ।

"ଧନାକାଂକ୍ଷା ବିନା ଜନ ଅନ୍ନ ପର
ଭିଆଣେ ଅଟେ ସମର୍ଥ
ଅଭାବେ ତାହାର ବଢ଼େ ସମାଦର
ପ୍ରାର୍ଥୀ ରଖେ ସମ୍ମାନିତ ।

ଯାଚଞ୍ଚା ବିନାଶେ ବୁଦ୍ଧି, ଜ୍ଞାନ, ଯଶ,
କାନ୍ତ୍ୟାଦି ଗୁଣ ନିଚୟ

ଯାଚକ ଦେହରୁ ହୋଇ ବହିର୍ଗତ
ରହନ୍ତି ହେଲେ ବାଳ୍ୟ।"

ରାଣୀ ତାଙ୍କ ସଙ୍ଗେ ଚଳିଲେ ସତ୍ୱରେ
ମନ, ଧ୍ୟାନ ରଖି ନଳେ
ନଳ ମୂର୍ତ୍ତି ଅନ୍ତ- ର୍ନେତ୍ରେ ଦେଖି ନେଇ
ରହନ୍ତି ସଦା ବ୍ୟାକୁଳେ।
ନଳ ପ୍ରତିମୂର୍ତ୍ତି ସର୍ବତ୍ର ଦିଶଇ
ଯଥା ହଳୀମକ ରୋଗୀ
ଜଗତେ ଯାବତ ଦେଖଇ ହରିତ
ଅନ ବର୍ଣ୍ଣ ପରିତ୍ୟାଗି।
ଦିନକର ଅସ୍ତ- ଅଚଳେ ପ୍ରବେଶ
ହେବାର ଦେଖି ସକଳେ
କୁମୁଦ, କହ୍ଲାର ଆଦି ବିମଣ୍ଡିତ-
ସରକୂଳେ ବିଶ୍ରାମିଲେ।
ଦୁର୍ନିବାର ଦୈବ- ଘଟନା ବଶତଃ
ବନ୍ୟ-ଯୂଥ ନିଶାକାଳେ
ଜଳ-ପାନେ ସରେ ପ୍ରବେଶ କାଳରେ
ବହୁ ଜନ ପ୍ରାଣନେଲେ।
ଭୟାବେଗ ହୋଇ ସରବେ ଅସ୍ଥିର
ହୋଇଲେ ଦେଖି ଘଟଣା
ତତକ୍ଷଣେ ସ୍ଥାନ- ତ୍ୟାଗି ସେ ପ୍ରୟାଣ
କଲେ ଯେ ଚେଦି ପାଟଣା

ପ୍ରଭୃତି ସରବେ ମିଳି ଲକ୍ଷ୍ୟ ପୁରେ
ପଥେ ଯାନ୍ତି କୁତୁହଳେ
ତାହାଙ୍କ ସଙ୍ଗତେ ଦୁଃଖିନୀ ରମଣୀ
ଏକ ଚାଲନ୍ତି ପଛରେ ।
ବିମୁକ୍ତ-କୁନ୍ତଳା ବିବର୍ଣ୍ଣ ଶରୀର
୧କର୍ପଟକୁ ପରିଧାନ
ଥିଲେ ହେଲେ ସେହୁ ଦର୍ଶକ ଚକ୍ଷୁରେ
ଦିଶନ୍ତି ମନୋମୋହିନୀ ।
କୌତୁକ ବଶତଃ ବାଳେ ଉପଗତ
ହୋଇ ସହାସ ବଦନେ
କରତାଳି ମାରି ଅଙ୍ଗ ପାଟିକରି
ସୁଦୃଶ୍ୟ ଦେଖାନ୍ତି ଜନେ ।
କର୍ଦ୍ଦମାକ୍ତ ହେମ ସମ ଅପଘନ
ଦ୍ୟୁତି ରହିଛି ବିକାଶି
ମୀନ ବିଲୋଚନା ଦେଖି ବାଳଶ୍ରେଣୀ
ନାଅନ୍ତି ବାତୁଳୀ ଭାଷି ।
ନୃପତି-ପ୍ରାସାଦେ ରାଜ-ମାତା ବସି
ଦେଖନ୍ତି ନଗର ଶୋଭା
ବାଳେ ହୋଇ ରୁଣ୍ଡ କରୁଥାନ୍ତି ତୁଣ୍ଡ
ଯୁବତୀ ବାୟାଣୀ କିବା ।
ଗୁଣବତୀ ରାଣୀ ୨ସ୍ୱ-ଜାତ ମାନିନୀ
ଦେଖି ନାରୀ ଦୁରବସ୍ଥା

---

୧ ଛିଣ୍ଡାଲୁଗା, ୨ ନାମ୍ବଜାତ

ହୃଦାସନେ ତାଙ୍କ ରଖିଣ ମନଥା
କଲେ ତାର ଗତଚିନ୍ତା ।
ଡ଼ାକ ନିଜ ଧାତ୍ରୀ କହିଲେ ନବରେ
ଯାଇ ଅଣ ସେ ଲଳନା
ତାର ଭବ, ଭାବ ଜଣାନ୍ତୁ ସରଳେ
ଦୁଃଖେ ସେ ଅଛୁ ବା ମଗ୍ନା ।
କମ୍ବୁଭୂଷଣେ ପରେ ରାଣୀଙ୍କ ଛାମୁକୁ
ଅଣାଗଲେ ଦମୟନ୍ତୀ
ରସା ଅନୁଭୂତ ପ୍ରବଳା ମହିଷୀ
ନିଦାନିଲେ ତା ଅକୃତ ।
ତାଙ୍କ ପରିଚୟ କଲେ ସେ ଜିଜ୍ଞାସା
ସତ୍ୟ ନ କହି ରମଣୀ
କହିଲେ ସମ୍ଭ୍ରାନ୍ତ କୁଳଜା ସେ ମାତ୍ର
ବାଧ୍ୟବଶେ ଅଭାଗିନୀ ।
ବୁଲୁଥିଲେ ବନେ ହୋଇ ଏକାକିନୀ
ଅହାରାଦି ବିବର୍ଜିତ
ବଣିଜାରୁ ଦଳ ସଙ୍ଗେ ହୋଇ ମେଳ
ପ୍ରବେଶିଲେ ପୁରେ ସେ ତ ।
ଜୀବନ ଧାରଣେ ଅନ୍ନହିଁ କାରଣ
ତା ସମ୍ପାଦନେ ଅକାଂକ୍ଷା
ଥିଲେ ହେଲେ ମନେ ପରାଧୀନ ବିନା
ରହିବା କରନ୍ତୁ ଇଚ୍ଛା ।

ଦୈବୀ ବଳେ ତାଙ୍କ ବିଚ୍ଛିନ୍ନ ନୀତସ୍ୱ
ହେଲା ପରେ ଅପହୃତ
ସତୀ ବ୍ରତେ ଯୁକ୍ତା ମାତ୍ର ସେ ଅରକ୍ଷା
ବିବିଧ କ୍ଲେଶେ ସନ୍ତପ୍ତ ।
ଜୀବନ ଧାରଣେ ଗୃହକର୍ମୀ ପଣେ
ନ କରନ୍ତି ସେ ସକଳ
ଯେ ହେତୁ ସେ ଅଟେ ସତୀତ୍ୱ ପତନ
ଅପବିତ୍ର ହେବା ମାର୍ଗ ।
ସଙ୍ଗିନୀ ପ୍ରତିକ ହେଲେ ଯେ ନିଯୁକ୍ତ
କେବଳ ରାଜ ନଗରେ
ଦୁର୍ଦ୍ଦଶା ବିମୁକ୍ତ ହେବା କାଳତକ
କାଟିବେ ସେବା କର୍ମରେ ।
ଶୁଣିଣ ବିବୃତ ରାଣୀ ହୋଇ ପ୍ରୀତ
ସନ୍ଦେହନା ନେଇ ମାନି
ନିଜ କନ୍ୟା ସୁନ- ନନ୍ଦାକୁ ଡ଼କାଇ
ବୋଇଲେ ଦେଖ ସଙ୍ଗିନୀ ।
ସହଚରୀ ହୋଇ ରହିବେ ସେ ପୁରେ
ଯେଣୁ ସେ ନିଷ୍ଠେ ଦୁଃଖିନୀ
ଜ୍ୟେଷ୍ଠା ଭଗ୍ନୀ ସମେ ରମଣୀକୁ ତୁମେ
ଦେଖୁଥିବ ଅନୁକ୍ଷଣି ।
ବିପଦ୍‌ଗ୍ରସ୍ତ ଚିତ୍ତ ହେବ ତ ବ୍ୟଥିତ
କଲେ ନିଷ୍ଠୁର ଆଚରଣ

ଦମୟନ୍ତୀ ଅଶ୍ବା- ସନା ପୁରଃସର
ଛାଟିଲେ ଦୁର୍ଦ୍ଦଶାଧନ ।
ଦୃଢ଼ ସଙ୍କଳପ ନ ହେଲ ବିଲୋପ
ହେଲ ମନୋବାଞ୍ଛା ସିଦ୍ଧ
ଇଣ ସୁମହତ୍ତ୍ୱ ସ୍ମରଣେ, ମନନେ
ନ ହେଲେ ସେ ଅବସାଦ ।
ରାଜ-ମାତା ବେଳେ- ବେଳେ ଅସି ଅନେ୧
ଅଶ୍ବାସନ୍ତ ବାକ୍ୟ ମେଳେ
କ୍ଷେମ-ଜେମା ହେଲେ ଚେଦିରାଜ ପୁରେ
ସଙ୍ଗିନୀ ସମ ରହିଲେ ।



## ଏକାଦଶ ସର୍ଗ

ପ୍ରାଣେଶୀ ବିଚ୍ଛେଦେ ନଳ ବନ ମଧ୍ୟେ
ଏକାକୀ କଲେ ବିହାର
ବ୍ୟାଧ-ବିଦ୍ଧ ମୃଗ ପରାୟେ ଭ୍ରମିଲେ
ହୋଇ ବ୍ୟାକୁଳ ଅନ୍ତର ।
କଳି-ଭ୍ରମ ବଶେ ନୟନ ପିତୁଳୀ
ହରି ଏକାକିନୀ ବନେ
ସ୍ବ-ଗଣ୍ଡ-ମଣ୍ଡଳ ଅନୁତାପ-ବନେ୨
ଅର୍ଦ୍ର କରୁଥିଲେ ଧ୍ୟାନେ ।
ଦୁରାତ୍ମା ଯେ କଳି ୩ନିରାକାରେ କିବା
କରୁଥିଲ ଅଗ୍ରଗତି

---

୧ ଘରକୁ, ୨ ବାରରେ, ୩ ଶୂନ୍ୟାକାରେ

ଅକର୍ତ୍ତବ୍ୟ ଭାବେ ଚଢ଼ୁଥାନ୍ତି ନଳ
ଈଶ୍ୱରେ ରଖିଣ ମତି ।
ନିଜ ପାପ କୃତ୍ୟ, ଅବଳା ଦୁର୍ଗତି,
ଦୁଃସ୍ଥିତି ପରିଚିନ୍ତନେ
ବାହ୍ୟଜ୍ଞାନଶୂନ୍ୟ ହୋଇ ସେ ରାଜନ
ଫେରନ୍ତି ବିଷଣ୍ଣ ମନେ ।
ଚତୁର୍ଦ୍ଦିଗୁଁ ସେହି ସୁଦୃଢ଼ ବିଷାଦ-
ବନ୍ଧନୀ ପରିବେଷ୍ଟିତେ
ଫାନ୍ଦେ ନିପତିତ ୧ବ୍ୟାଳେଶପ୍ରାୟ ବ୍ରତ
ରହନ୍ତି ବାଦଗ୍ରସ୍ତ ଚିତ୍ତେ ।
କିଛି କାଳ ପରେ ଦେଖିଲେ ବନରେ
ଅନଳ ହୋଇ ପ୍ରଦ୍ୟୋତ
ଲତା, ତରୁ, ଗୁଳ୍ମ କରି ବିନାଶନ
ସାଧୁଣ ବହୁ ଅହିତ ।
ଶତ ଶତ ଜୀବ କଲ୍ଲ ସେ ନିର୍ଜୀବ
ତା ହେଲା ଦୃଷ୍ଟିଗୋଚର
ସନ୍ତପ୍ତ-ହୃଦୟେ ରହିଲେ ସେ ସ୍ଥିର
ଚଳଣି କରି ନିଜର ।
ସେ କାଳେ ଶୁଭିଲା "ହେ ନଳ ରାଜନ
ଭଦ୍ଧର ମତେ ସତ୍ୱର"
ଶବଦ ଜନମ- ସ୍ଥାନକୁ ବାହନ
ଚଳିଗଲେ ନରବର ।

---

୧ ସର୍ପ, ମୂଷିକ

ଦେଖିଲେ ଭୀଷଣ କର୍କୋଟକ ନାଗ
ଥିଲା ଅଗ୍ନି-କବଳିତ ।
ତା' ଉଦ୍ଧାର ଚିନ୍ତା ସେ ଦଉଡ଼ି ଯାନ୍ତେ
କହେ ଉରଗ (ହୋଇ) ସୁପ୍ରୀତ ।
ଶିଳା ସମ ହୃଦୟ ଥିଲେହେଁ ମାନବ
ତରଳିବ ତା ନିଶ୍ଚିତ
ଦୟା ଦ୍ରୋଣୀ ଯାର ହୃଦେ କରେ ଘର
ତା ଭବ ପରତନ୍ତ୍ରିତ ।
ସମୀପେ ସଜନ ବିସ୍ମିତ ଅନନେ
ଦେଖିଲେ ନାଗ ଅନଳେ
ଅଚିରେ ବିଦଗ୍ଧ ହେବାର ଆଶଙ୍କା
ଜନମିଲା ହୃଦ ସ୍ଥଳେ ।
୨ଚକ୍ଷୁଶ୍ରବା କହେ "ମତେ କରିଦୂର
୧ନିଅ ଦୟାଳୁ ନରେଶ
ମୁଁ ହେବି ଉଦ୍ଧାର ତବ ଉପକାର
ସାଧିତ ହେବ ଅବଶ୍ୟ ।"
ଅବିଶ୍ୱାସୀ ଜୀବ ବିଶ୍ୱାସ-ଭାଜନ
ନ ହେଲେହେଁ ନୀତ ମତେ
ପ୍ରାଣୀ ନାଶ ଭୟେ ରକ୍ଷଣ ଅଭୟେ
କଲେ ତା ଆକାଂକ୍ଷା ମତେ ।
କର୍କୋଟକ ନାଗ ହୋଇଲା ଉଦ୍ଧାର
ଦଂଶିଦେଲା ନଳ ସଣେ

---

୧ ନିଆଁରେ ପୋଡ଼ି, ୨ ସର୍ପ

ତା ପରେ ଅପଣା ସ୍ୱରୂପ ବହଣ
ଯୁକ୍ତ ବାଢ଼ିନେଲ କ୍ଷଣେ ।
"ହୋଇ ଉପକୃତ ଉପକାର ମାନ
ନ ନେଲ ବୋଲି ଭାବନା
ମନେ ନାହିଁ କର ଅହେ ଦଣ୍ଡଧର
ମୋ କୃତ୍ୟ (ତବ) ହିତ ସାଧନା ।
ଦଂଶିଲି ଅପଣେ ଅନ୍ତଃଶତ୍ରୁ ଠାଣେ
ବାଧିବ ଭାବନା ଧରି
ପୁଷ୍ଟେ ରହି ତୁମ୍ଭେ ଅପାର ଯନ୍ତ୍ରଣା
ଅନ୍ତେ ଭୋଗେ କଳି-ଅରି ।
ମନେ ବଳାଇଲି ତବ ହୃଦେ ବସି
କପୋତ ଧରିବା ପାଇଁ
ଦ୍ୱାପର ଅଦୃଶ୍ୟେ ହରିନେଲି ବାସ
ଜାଣି ଶ୍ରୀର ନରସାଇଁ ।
ମହାରାଜ ହୋଇ ନାନା କଷ୍ଟ ସହି
ନେଉଛ ନଳ ଏକ୍ଷଣି
ଅଜ୍ଞାତେ ରହିବା ଉଦ୍ଦେଶ୍ୟେ ମୁଁ ଏବେ
ସଜାଡ଼ିଲି ତନୁ ପୁଣି ।
ତବ ଅଙ୍ଗ ଶୋଭା ଜଣାଇବେ ଯୁବା
ମହତ ପୁରୁଷ ଜଣେ
ତହୁଁ ପ୍ରତଫଳ ହେବ ସମାକୁଳ
ଯେ ଅଭାବ ବଶେ ବନେ ।

ସେ ହେତୁ କହଇ ଉପକାର ବନ୍ଧୁ
ନେଲ ମୋ ସ୍ୱଭାବ ଗୁଣୁଁ
ମନେ ରଖ ତାହା ଅହେ ନରନାହା
ଅପକାରୀ କେ ନଗଣୁ ।
ପ୍ରାକୃତିକ ବେଶେ ଇଚ୍ଛା କଲେ କେବେ
ସ୍ଥିରବ ମୁଁ-ସ୍ଥାନେ ଶତ୍ରୁ
ଶୂନ୍ୟ ଲଭ ବାସ ତାଙ୍କୁ ପରଧାନ
ଘଟିବ ୧ପୌର୍ବିକ ମତେ ।
କଳି ଗୁଣ କାଣି ରଖ ନରମଣି
ସେ କ୍ରୁର, ଚନ୍ଦନ-ସ୍ଥାନ
ଧର୍ମ ବିନାଶିବ ତପ ନାଶି ଦେବ
ଅସତ୍ୟେ ରଖି ଭୁବନ ।
ପତି, ପତ୍ନୀ ମଧ୍ୟେ ପ୍ରେମ ବିଦୂରିତେ
ଇତରେ ପତ୍ନୀ ଅଦର
ବଢ଼ାଇ ସତୀତ୍ୱ ତାହାର କ୍ଷୀଣତା
କରୁଥିବ ଶ୍ରଦ୍ଧାଭର ।
ପିତା, ପୁତ୍ର ମଧ୍ୟେ ଦ୍ୱେଷ ନେଇ ସାଧି
ଉପୁଜାଇ ଭେଦଭବ
ଏକ କୃତ କର୍ମେ ଅସନ୍ତୁଷ୍ଟ ମନେ
ଅନକୁ ନିଷ୍ଟେ ଗୃଳବ ।
ଯେ ଯାର ପୋଷଣେ ରହିବେ ସହାଗି
କେ ନ କର କାର ଚିନ୍ତା

---

୧ ପୂର୍ବାନୁରୂପେ

ପିତା-ଗୁରୁ ଭାବ   କଷ୍ଟେ ଛଡ଼ାଇବ
ପିତ୍ରାଦେଶ ହେବ ବୃଥା ।

ରହ ସାବଧାନ   ହେ ମହାରାଜନ
ସେହି ସେ ଗୃହେ ଅପଣ
କେବଳ ଈଶ୍ୱର   ଚନ୍ଦ୍ରା-ସୁଧାଧାରେ
ଲଭିବ ତ ପରିତ୍ରାଣ ।

କହେ କିଛି କାଳ   ରହିଲେ ଗୋପନେ
ଶ୍ରେୟ ହୋଇବ ପ୍ରଚୁର
ପ୍ରାଣପ୍ରିୟ କାନ୍ତା   ସଙ୍ଗତେ ମିଳିତ
ହେବ କହେ ସତ୍ୟ ଗିର ।

ତବ ନଷ୍ଟ ରାଜ୍ୟ   ସକଳ ବିଭୂତି
ଲବ୍ଧ ହେବ ନଳ-ରାଣ
ଇକ୍ଷ୍ୱାକୁ ବଂଶଜ   ଋତୁପର୍ଣ୍ଣ ରାଜ୍ୟେ
ଗୁପ୍ତେ ରହ କିଛି ଦିନ ।

ନାମ ନ ଜଣାଇ   ବାହୁକ ବୋଲାଇ
ରହିଲେ ଯେ ଋତୁପର୍ଣ୍ଣ
ଅଶ୍ୱ ଶାସ୍ତ୍ର ଜ୍ଞାନେ   ହୋଇ ପ୍ରୀତମନା
ଦେବେ ସେ ବାହକ ପଣ ।

ପ୍ରସିଦ୍ଧ ବଂଶଜ   ସୁଗୁଣେ ମଣ୍ଡିତ
ପଣ୍ଡିତ ସେ ନରପତି
ଅଙ୍କ ଶାସ୍ତ୍ରେ, ଅକ୍ଷ-   ଶାସ୍ତ୍ରେ ପାରଦର୍ଶୀ
ଅପାର ତାଙ୍କ ବିଭୂତି ।

ସେ ମହଦାଶୟ ନ ମଣ ହେ ହେୟ
ତବ ସମକକ୍ଷ ସେହୁ
ପରଣାମେ ଜଣା ଗଲେ ଗୁପ୍ତବାସ
ଜନେ ନ ନିନ୍ଦବେ କେହୁ ।
ମୁଁ ଜାଣେ ଅବଶ୍ୟ ରାଜପୁର ଅଶ୍ୱେ
ରହିବେ ତୁମ୍ଭ ଅଧୀନେ
ରାଜ୍ୟ ଅଧିକାର ବହୀନ ନୃପତ
ଲଗିବ ଅଶ୍ୱ ଶାସନେ ।"
ଶ୍ୟାପ-ବଶେ ନାଗ ଥିଲ ଯେ ଗନ୍ଧର୍ବ
ନଳ ହାତେ ମୁକ୍ତ ପାଇ
ନଳଙ୍କୁ ପ୍ରଣମି ଗଲ ସ୍ୱ-ଭବନେ
ତହୁଁ ଅନ୍ତର୍ହିତ ହୋଇ ।
ନାଗବର ବାଣୀ କର୍ଣ୍ଣେ ନେଇ ଶୁଣି
ନଳ ଋତୁପର୍ଣ୍ଣ-ପୁରେ
ଅନତବଳମ୍ବେ ଚଳଣ ସତ୍ୱରେ
ହେଲେ ନୃପତ ସମ୍ମୁରେ ।
ଅଳ୍ପ ପରଚୟ ଦେବାକୁ ୧ଜଜ୍ଞାସା
କରନ୍ତେ କହିଲେ ନଳ
ସମ୍ଭ୍ରାନ୍ତ କୁଳଜ, ଜ୍ଞାନ, ବୁଦ୍ଧିଯୁକ୍ତ
ସର୍ବ ଶାସ୍ତ୍ରେ ସେ କୁଶଳ ।
ଅଶ୍ୱଶାସ୍ତ୍ର ବଳ ତାହାଙ୍କ ପ୍ରବଳ
ମନ୍ତ୍ରଣେ ସେ ମନ୍ତ୍ରିବର

---

୧ ଜାଣିବା ଇଚ୍ଛା

ସୁସ୍ୱାଦୁ ରନ୍ଧନ ତାଙ୍କ ହସ୍ତ ଗୁଣ
ସଂଗ୍ରାମେ ଅପ୍ରତ ବୀର ।
ବାହୁକ ଚଦବୀ ବଶେ ସେହୁ ଗର୍ବୀ
ସେ ଅଦ୍ୱିତୀୟ ସାରଥି
ତାଙ୍କ ସମ କେହୁ ଧରାତଳେ ନାହିଁ
ଜଣାଇଲେ ସେ ନୃପତି ।
ରାଜା ଗୁଣାବଳୀ ଶୁଣି ନେଇ ନଳ
ସେ ହେଲେ ତାଙ୍କ ପୁରତେ
ଉଦର ବାଧା ଯେ କାହାକୁ ନରଖେ
ଯୋଗ୍ୟ ସଜ୍ଜନ ଅର୍ଥିତେ ।
ସୁମିଷ୍ଟ ବଚନ ଶୁଣି ଋତୁପର୍ଣ୍ଣ
କହିଲେ ଯାନ-ବାହକ
ହୋଇ ମୋର ପୁରେ ରହହେ ସୁଖରେ
ଅବର ହୟ-ସେବକ ।
ମନ୍ତ୍ରୀଙ୍କ ଡକାଇ କହିଲେ ପ୍ରଚୁର
କର ରାଜାଜ୍ଞା ପ୍ରଚର
ଯଥା ଯୋଗ୍ୟ ମାନ୍ୟ କରି ପୁରଜନେ
(କରନ୍ତୁ) ବାହୁକଙ୍କୁ ସମାଦର ।
ସମ୍ମାନିତ ହୋଇ ନଳ ରହି ତହିଁ
ଦୃଷ୍ଟି ବିଧାନ ସ୍ୱକର୍ମ
କରି ନେଇ ରାଜା ଅନୁଜ୍ଞା ପାଳନ୍ତି
ଯଥା ସେବକ ଧରମ ।

"ମହତ-ମାନବ ମହତ ଅଶିତ
ହେଲେହେଁ ଦୁର୍ଦ୍ଦଶା ବଶେ
ହୁଏ ସମ୍ମାନିତ ୧ପାରିନ୍ଦ୍ର ଯେମନ୍ତ
ରହେ ରାଜପୁରେ ପାଶେ" ।
ଧବା ରାଜ କର୍ମେ ରହ ଚନ୍ଦ୍ରା-ବର୍ମେ୨
ରହୁଥାନ୍ତ୍ରି ଅବେଷ୍ଟିତ
ପ୍ରେୟସୀ ଭାବନା କରେ କ୍ଷୁନ୍ନମନା
ନିଦ୍ରା ରହେ ବଦୂରତ ।
"ସ୍ବପ୍ରିୟା ବଚ୍ଛେଦ ସହିବ କାହିଁ ଦ
ହେଲେହେଁ ସେ ଶିଳାସମ
ଜଗତେ କପୋତ- କପୋତୀ ଶିଖାନ୍ତି
ଦମ୍ପତ ପ୍ରେମ ଉତ୍ତମ ।
ରମଣୀ ବମୁଖୀ ହୋଇ ୩ପଞ୍ଚମୁଖ
ବସିଥିଲେ ଯୋଗାସନେ
ପରେ ଅର୍ଦ୍ଧନାରୀ ସୁବେଶ ଅଦର
ବହରନ୍ତି ରସା ଧାମେ ।
ସତୀ ସିନା ପତ ୪ବଭୂତ ଅଧାର
ପାଶରୁ ହେଲେ ସେ ଭନ୍ନ
ରସ ୫ନିଷ୍କାସନେ ପକ୍ୱାମ୍ର ଦେହରୁ
ଲୁଚ୍ଛ ଯଥା (ତା) ଅବରଣ" ।
ହୃଦୟ ବେଦନା ତାଙ୍କ ନୁହେ ଜଣା
ଅନ୍ତର୍ଦ୍ଦାହେ ସେ ବକଳ

---

୧ ସିଂହ, ୨ ସାଞ୍ଜୁ, ୩ ଶିବ, ୪ ଐଶ୍ବର୍ଯ୍ୟ, ୫ ଚପୁଡ଼ା

ହୋଇ ଷଣ୍ଢୁଥାନ୍ତି    ୧କୁଷ୍ମାଣ୍ଡ ପରି ଏ
ବାହ୍ୟେ ନ ଦିଶେ ସ୍ୱଚ୍ଛଳ ।

## ଦ୍ୱାଦଶ ସର୍ଗ

ନଳ-ଦମୟନ୍ତୀ    ଦୁର୍ଦ୍ଦଶା, ଦୁର୍ଗତି
ବିଦର୍ଭ ରାଜ୍ୟେ ପ୍ରକଟେ
ତଦର୍ଥେ ପରଜା    ବର୍ଜି ନିଦ୍ରେକ
ହେଲେ ରାଜା ରାଣୀ କଷ୍ଟେ ।
ଅଶନେ, ପାନେ କା'    ମନ ନ ବଳିଲ
ଦମୟନ୍ତୀ-ଚିନ୍ତା ମଥା
ଘୂର୍ଣ୍ଣିତ କରଣ    ଅଣିଲ ବିଭ୍ରମ
ଜ୍ୱର-ତାପାଗମେ ଯଥା ।
ସେହି ସେ ଲଙ୍ଘନ    ପ୍ରତିକ ବା ହେଲ
ପରେ ପ୍ରତିକାର ଚିନ୍ତି
ବସି ସ୍ଥିର ନାରୀ,    ନର ମିଳି ଭରି
ଗଲେ ପ୍ରାସାଦେ ଝଟିତି ।
ବହୁତ ସାନ୍ତ୍ୱନା    ରାଣୀଙ୍କୁ ପ୍ରଦାନ
କହିଲେ ଦୂତ ପଠାଇ
ନନ୍ଦନା ଉଦନ୍ତ    ଅଣାଅ ତୁରିତ
କ ଦଶା ଭୋଗନ୍ତି ସେହି ।
ଉପଦେଶ ମାନ    ନେଇ ରାଜା ରାଣୀ
ରାଜାଙ୍କୁ କଲେ ଗୋଚର

---

୧ କଖାରୁ

ସେ କ୍ଷଣି ରାଜାଜ୍ଞା ହୋଇଲା ପ୍ରଚାର
ଜମିଲେ ଅସଂଖ୍ୟ ଚର ।
"ଧନାଶା କାହାକୁ ନ ଅଣେ ପାଶକୁ
ଯଥା ୧ପିପୀଲିକା ଶ୍ରେଣୀ
ଇଷ୍ଟ ରସାଘ୍ରାଣେ ଚଳନ୍ତି ବହନେ
ଦୂର-ସମୀପ ନ ମଣି ।
ଅନାୟାସେ ଧନ ଲଭିବା କାରଣ
ଜନେ ହୋଇ ଉତ୍କଣ୍ଠିତ
ଅନାହୂତେ ମଧ୍ୟ ହୋଇ ଉପଗତ
କରନ୍ତି ଦାନୀ ବରତ" ।
ହୋଇଲା ତଦ୍‌ବତ ଜନେ ସମବେତ
ହେଲେ ରାଜ ପ୍ରାସାଦରେ
ପାଥେୟ ଲଭିଲେ ଦଗେ ଦଗେ ଗଲେ
ଧନାଶାପୂର୍ଣ୍ଣ ହୃଦରେ ।
କୃତକାର୍ଯ୍ୟ ନୋହି ଗୋଟି ଗୋଟି ହୋଇ
ରାଜାପାଶେ ହୋଇ ପରେ
ପ୍ରସ୍ଥାଣ ବୃତ୍ତ କଲେ ନୋହି ୨ସ୍ଫୂର୍ତ୍ତି
ଧନାଶା ଘୁଞ୍ଚ ସୁଦୂରେ ।
ମନସ୍କାମାନଳ ରାଣୀ ହୃଦ ସ୍ଥଳେ
ଜଳିବାରୁ ବାର ବାର
ସେ କ୍ଷାନ୍ତ ନ ହୋଇ ଅନ ଦୂତ ପାଇଁ
ବରଗିଲେ ନିଜ ଚର ।

---

୧ ପିମ୍ପୁଡ଼ି, ୨ ହର୍ଷ

ସୁଦେବ ନାମକ ବିପ୍ରବର ଏକ
ସ୍ୱପୁରୁଁ ହୋଇ ବାହାର
ଦେବ, ଦେବୀ ଧ୍ୟାନ ହୋଇ ପଥଗାମୀ
(ହେଲେ) ରାଣୀ ପୁରତେ ହାଜର ।
"ହୃଦ-ସରେ ଆଶା ୧ସରୋଜ ବିକାଶ
ହୁଏ ଯେବେ ଜୀବେ କ୍ଷଣେ
ନାସ୍ତିକ ହେଲେହେଁ ଈଶ୍ୱର ଚିନ୍ତନ
କରିବ ସୁଫଳ କାମେ" ।
ପୂରୁଁ ପରଚିତ ଥିବାରୁ ସେ ବିପ୍ର
ରାଣୀ ହୋଇ ପ୍ରୀତିଭର
ବିଶ୍ୱାସେ କହିଲେ କେମା ଖୋଜ ଭଲେ
ସେ ମୋର ଦୁଃଖ ପାସୋର ।
ଅବର ନଳଙ୍କ ୨ସନ୍ଧାନ ସମ୍ବାଦ
କାହିଁ ସେ' ଛନ୍ତି ଗୁପତେ
କାର୍ଯ୍ୟ ସିଦ୍ଧି ପରେ ଧନାଦି ପ୍ରଚୁର
ଲଭିବ ମୁଁ କହେ ସତେ ।
ହୃଦେ ଆଶା-ଶକ୍ତି ପ୍ରବେଶି ଶକତ
କରି ନେବାରୁ ସେ ଦ୍ୱିଜ
ଦ୍ୱିପୁ ଅନ୍ୱେଷଣେ ଲଗି ଅନୁକ୍ଷଣେ
ଦେଖିଲେ ସେ ବହୁ ରାଜ୍ୟ ।
କପୃତ୍ ଦନ ପରେ ହେଲେ ଚେଦିପୁରେ
ବିଶ୍ରାମିଲେ ସିଂହଦ୍ୱାରେ

---

୧ ପଦ୍ମ, ୨ ଅନୁସନ୍ଧାନ, ଠିକଣା

ପଥ-ଶ୍ରମ ବଶେ ରହିଲେ ଅବଶେ
ମଜ୍ଜିଲେ ଈଶ-ଚିନ୍ତାରେ ।
"ଶାରୀରିକ କ୍ଳେଶ ମାନସିକ ତାପ
ହରଣେ ଯେ ୧ରସାୟନ
ମହେଶ ଚିନ୍ତନ ଅଟଇ ନିଦାନ
କହୁଥାନ୍ତି ଜ୍ଞାନି-ଜନ" ।
ଚତୁର୍ଦ୍ଦିଗେ ନେତ୍ର କଲେ ନିପତିତ
ଦେଖିଲେ ଏକ ଯୁବତୀ
କୋମଳ ବୟସ୍କା ବାଳେ ହୋଇ ଯୁତା
ପ୍ରାସାଦେ ବସି ଖେଳନ୍ତି ।
୨କର୍ପଟ-ପିଧାନା ମଳିନ-ବଦନା
ଦୁଃଖିନୀ ପ୍ରାୟ ପ୍ରତୀତ
ହେବାରୁ ଭାବିଲେ ଦମୟନ୍ତୀ କିବା
ସେ ପୁରେ ଛନ୍ତି ଆଶ୍ରିତ ।
ଭାବନା ପଶ୍ଚାତେ ଗଲେ ସେ ପ୍ରାଙ୍ଗଣେ
ହେଲେ ଅନ୍ତଃପୁର ଦ୍ୱାରେ
ଦୃଢ଼ ମନସ୍କାମ ବଶେ ସେ ବ୍ରାହ୍ମଣ
ଡ଼ର ନ କର କାହାରେ ।
୩ଗବାକ୍ଷ ସମୀପେ ଲୁଚି ରହି ବିପ୍ର
ନିରେଖିଲେ ସେ ନବୀନା
ବାଲ୍ୟେ ପରିଚିତା- ରମଣୀ ସର୍ବାଙ୍ଗ
ପରଖେ ହୋଇ ତନ୍ମନା ।

---

୧ ପୁଷ୍ଟିକାରକ ଔଷଧ, ୨ ଛିଣ୍ଡାଲୁଗା, ୩ ଝରକା, ପଞ୍ଜର

ଦମୟନ୍ତୀ ଭାଲ ସ୍ଥିତ ପେଣ୍ଡୁ ଦାଗ
ହେବାରୁ ଦୃଷ୍ଟି ଗୋଚର
କଲେ ସ୍ଥିରକୃତ ସେହୁ ଭୀମସୁତା
ଦମୟନ୍ତୀ ଯେ ନିଶ୍ଚର ।
କୃପାଣି ଗୃହକୁ ବହୁତ ସୁଦେବ
ବୁଲିଥିଲେ ଦେଶାନ୍ତରେ
ଦମୟନ୍ତୀ ରୂପ- ୧ଘନ-ଜାଲ ସମେ
ଦେଖି ନେଲେ ନିର୍ନିମେଷେ ।
କାହିଁ ବିଦର୍ଭ କାହିଁ ବା ନିଷଧ
କାହିଁ ରହେ ଚେଦିପୁର
ମହାରାଜ କନ୍ୟା ନଳ-ପତିପ୍ରାଣା
ଦେଖିଲେ ସେ ବିପ୍ରବର ।
ବିଧାତା ବିଧାନ ଦୁର୍ଗମ ନିଦାନ
କେ କଳି ନପାରେ ତାହା
୨କେଶରୀ କନ୍ଦର ବିରଜି କି ଜାଣି
ବିଶ୍ରାମେ ବା ଶଶାଗୁହା ।
ଦରିଦ୍ର ବ୍ରାହ୍ମଣ ଅହାର ବିହୀନ
ଯାଉଥିଲେ ଦିବା ନିଶି
ନାନା ରତ୍ନ, ଧନ, ମାନ, ସମ୍ପାଦନ
ସୁଯୋଗେ କ୍ଷୁଧା ବିନାଶି ।
ଭାଗ୍ୟ ଚକ୍ର ଗତି ଅଗୋଚରେ ସ୍ଥିତ
ଚରକମେ ଦିବାରାତ୍ର

୧ ମେଘ, ୨ ସିଂହ

ତାହା ଶିରେ ଦେବେ ଚକ୍ରପାଣି କେବେ
ଯଶ-ଶଶି ୧ଆତପତ୍ର ।
ଅନ୍ନ କଂସ୍ତେ ପଡ଼ି ସଢ଼ୁଥିବା ଜନେ
ଶାଲ୍ୟାନ୍ନାଦ ଖାଦ୍ୟ ଅଶା
ମଡରେ ମାଡଲେ ତାର ପ୍ରଭାବରେ
ବଢ଼ାଏ ତୃଷ୍ଣା ସହସା ।
ହୃଦୟ ଅଳୟେ ଗଢ଼ିନଏ ୨ହର୍ମ୍ମ୍ୟ
ନାନା ବାସନାଉନ୍ନତ
ବଢ଼ଇ ସେଷଣି ସ୍ରୋତସ୍ୱତୀ ଜାଣି
ବୃଦ୍ଧି କରେ ମୂର୍ଖ-ଭୁତ ।
ଅନ୍ତହର ହୋଇ ଭାବସରେ ଭାସି
ସୁଦେବ ଯିବା ସମୟେ
ଦମୟନ୍ତୀ ଦେଖି ହେଲେ ବିମୁଖିନୀ
ପଚାରିଲେ ତୁମ୍ଭେ କିଏ ।
ପ୍ରବେଶ ନିଷେଧ- ପୁରେ ତ ୩ଜ୍ଞାନବୋଧ
କର ନେଲ ଆଗମନ
ଜାଣେ ମୁଁ ଆପଣ ନୁହ ପୁରଜନ
କହ ଆଗତ କାରଣ ।
ପରିଚୟ ଦେଇ ବିପ୍ର ଦେଲେ କହି
ସେହି ଭୀମ ରାଜା ଦୂତି
କେମା ଅନ୍ୱେଷଣେ ବୁଲି ସ୍ଥାନେ ସ୍ଥାନେ
ଲଭିଲେ ତେବେ ସାକ୍ଷାତ ।

---

୧ ଛତ୍ର, ୨ ଅଟ୍ଟାଳିକା, ୩ ଅଜ୍ଞାନୀ

ପିତ୍ରାଳୟୁ ବାର୍ତ୍ତା ଶୁଣିବା ଅକାଂକ୍ଷା
ପୂରଇ ମନ-କନ୍ଦରେ
ସମ୍ଭାଷଣେ ରତା ହେଲେ ଦମୟନ୍ତୀ
ନିଜେ ଥିଲେହେଁ ଖେଦରେ ।
କଥୋପକଥନୁ ଜାଣିଲେ ସରବେ
ନାମ ଭୀମ ରାଜକନ୍ୟା
ସ୍ୱୀୟ ଭଗ୍ନୀ ସୁତା ସୁନନ୍ଦା ସଙ୍ଗିନୀ
ଜାଣିଲେ ପୁର-ମହିମା ।
ନଳଙ୍କ ଦୁର୍ଦ୍ଦଶା ଜାଣିଲେ ମହିଷୀ
ହେଲେ ସେ ଶୋକେ ନିମଗ୍ନା
ବୋଇଲେ କିମ୍ପାଇଁ ହେଲ ଦମୟନ୍ତୀ ?
୧ମାତୃଷ୍ୱସେ ତୁ ଗୋପନା ।
ଶୈଶବେ ମୁଁ ତତେ ମୋ ଭଗିନୀ ସାଥେ
ଦେଖିଥିଲି ଥରେ ସିନା
ପରେ ଦେଖା ନୋହି ବହୁଦୂରେ ରହି
ଭୁଲିଲି ଏବେ ମୋ କନ୍ୟା ।
ତୁହି ସେ ପ୍ରଥମା- କନ୍ୟା ତ ମୋହର
ସୁନନ୍ଦା ତୋର କନିଷ୍ଠା
ଦୁର୍ଦ୍ଦଶା ବଶତଃ ମୋର ପୁରଗତେ
ରଖିଲୁ ଯେ ମତେ ତୁଷ୍ଟା ।
କେବେହେଁ ତୋହରେ ମୁହିଁ ଅଜ୍ଞାତରେ
ଥିଲେହେଁ ଅଶିଷ୍ଟାଚାରେ

୧ ମାଉସୀରେ

ମୋ ଗୁରୁତ୍ୱ ମାନ ନିଅ ପ୍ରାଣଧନ
ନ ବହ କେବେ କ୍ଷୋଭରେ ।
ମୁଁ ଯେଣୁ ମାନସୀ ମୋ ଅଶିଷ ରାଶି
ଘେନ ମୋ ଉତ୍ତମା କ୍ଷମା
ତୋହର ଦୁର୍ଗତି ଅବର ଦୁଃସ୍ଥିତି
ମୋ ବୁଦ୍ଧି କରଇ ବଶା ।
ପତି-ପ୍ରାଣା ପତି ଭେଟିଣ ଝଟିତି
ଦୁର୍ଦ୍ଦଶାପୁର ବିନାଶି
ମୋ କଲ୍ୟାଣ ବଶେ ରହ ନିଜ ଦେଶେ
ମଣ୍ଡିତେ ବିଭୂତି ରାଶି ।
ପୁରେ ପ୍ରବେଶିଲ ଗହଳ, ଚହଳ
ସର୍ବେ ଜାଣିଲେ ଯୁବତୀ
ସତୀ ଶିରୋମଣି ନିଷଧେ ଯେ ରାଣୀ
ନିଷ୍କଳଙ୍କା ଦମୟନ୍ତୀ ।
ଗନ୍ଧବହ ସତ୍ୟ- ଗନ୍ଧ ପ୍ରକଟିତେ
ସୌରଭ ବାଢ଼ିଲା ଖର
ନଳ ରାଣୀ ଗଲେ ବାକ୍ୟ ସୁମମାଳେ
ମଣ୍ଡିଲେ ସଙ୍ଗିନୀକୁଳ ।
ସମାଦର ଭରେ ଦମୟନ୍ତୀ ପୁରେ
ବିଶ୍ରାମିଲେ କେତେ ଦିନ
ବିଦର୍ଭେ ଯାଇ ଜନକ-ଜନନୀ
ଦର୍ଶନେ କରିଲେ ମନ ।

କିଛି କାଳ ପରେ ମହିଷୀ ଗ୍ରାମରେ
ଅଭିଲାଷ କଲେ ଗୋଚର
ସେ ଧନ ରତନ ବାହନ, ପ୍ରଦାନ
ବିଦାୟ ଦେଲେ ସତ୍ୱର ।
ଆବର କହିଲେ ମୋ ପୂଜ୍ୟା ଭଗିନୀ
ଜଣାଇବୁ ମୋ ପ୍ରଣାମ
ତୋର ପରିଚୟ ନ ପାଇ ମୁଁ ହେୟ
ନ ଦେଲି ଯୋଗ୍ୟ ସମ୍ମାନ ।
ସ୍ୱପୁରେ ପ୍ରବେଶି ନିଷଧ-ମହିଷୀ
ପିତା, ମାତା, ଗୁରୁଜନେ
ଯଥା ଯୋଗ୍ୟ ଅଭି- ବନ୍ଦନ ଭିଆଇ
ରହିଲେ ବିଷଣ୍ଣ ମନେ ।
ସ୍ୱ ସ୍ୱାମୀ ସନ୍ଧାନ ନ ଲଭି ନନ୍ଦନା
ଭଙ୍ଗୀ ଦିଶୁଥାଏ କ୍ଷୀଣା
ଚନ୍ଦ୍ରା-କୀଟ ଅନ୍ତେ କାଟନ୍ତି ନିରତେ
ବୃଦ୍ଧି କରୁଥାନ୍ତି ବଣା ।
ସ୍ୱଜନ ଲଳନା ବଣେ ଯେ ଲଳନା
ବିହରନ୍ତି ଦିବା-କାଳେ
ନିଶୀଥେ ପ୍ରବଳ ବିରହ-ଚଣ୍ଡାଳ
ବାଧାଦିଏ ହୃଦସ୍ଥଳେ ।
ଦିନୁଁ ଦିନ କେମା ୧ପ୍ରତନୁ ଶରୀର
ଦେଖି ବିଷାଦିତ ମନେ

୧ କୃଶ

ରହିଲେ ଜନନୀ    ଢୋଇଣ ଦୁଃଖିନୀ
ଜଣାଇଲେ ତା' ରାଜନେ ।

ନଳ ଅନ୍ୱେଷଣ-    ଚିନ୍ତା ସର୍ବ ପ୍ରାଣ
ଆକର୍ଷିଲ ଦୃଢ଼ତର
ଦୂତ ପଠିଅଇ    ନଳ ଖୋଜାପାଇଁ
କରଲେ ରାଜା ବିଦର୍ଭ ।

ସୁଯୋଗ୍ୟ ବ୍ରାହ୍ମଣେ    ପୁରୋଧାଦ ଗଣେ
ଆମନ୍ତ୍ରିଲେ ଯଥାବିଧି
ଶାସ୍ତ୍ରଜ୍ଞାନୀ, ବାଗ୍ମୀ    ପଣ୍ଡିତାଦିଙ୍କୁ ଜାଣି
(ରାଜା) କହିଲେ ତାଙ୍କୁ ପ୍ରବୋଧି ।

ଉପଦେଶ ଅଶେ    ଦମୟନ୍ତୀ ପାଶେ
ତାହାଙ୍କୁ କଲେ ପ୍ରେଷଣ।
ସେ କହିଲେ ଦ୍ୱିଜ    ଚଳ ରାଜ୍ୟ ରାଜ୍ୟ
ଖୋଜ ନଳ ମହାମନା ।

ଆକାର, ସ୍ୱଭାବ    ବର୍ଣ୍ଣିନେଇ ସର୍ବ
ଚିହ୍ନଟେ ଦେଲେ ସୁବିଧା
କହିଲେ ଅବଶ୍ୟ •    କଷ୍ଟ ଭୋଗ ବଶୁଁ
ଥାଇପାରେ କିଛୁ ଦ୍ୱିଧା ।

ଜନ ସମାଗମ    ସ୍ଥଳେ ବହୁ ପ୍ରେମ
ପ୍ରଚ୍ଛିବ କେତେ ପ୍ରଶ୍ନେ
ଦେଖିଛନ୍ତି କେହୁ    ନିଜ ଜାୟା ନେଇ
ଏକାକିନୀ ଛାଡ଼େ ବନେ ।

ଅବର କହିବ
କେ ପ୍ରିୟା ପଣନ୍ତ
କାଟିକର ଛିନ୍ନବସ୍ତ୍ରା
୧ଛିନ୍ନ-ବସ୍ତ୍ରା ସମେ
ଛାଡ଼ିଦେଇ ବନେ
ରହନ୍ତୁ ନଥାଇ ଶଙ୍କା ।
କାହିଁ କେ ଉତ୍ତର
ଦେଲେ ଦ୍ୱିଜବର
ନୈଷଧର ଫେର ଅସ
ଉତ୍ତର ଅଶାରେ
ସତ୍ୟ, ପତ୍ନୀ ପୁରେ
ବୁଲିବଳ ଅହର୍ନିଶ ।
ମୁଁ ଜାଣେ ନିଶ୍ଚୟ
ବହୁ କଷ୍ଟ ସହ୍ୟ
କରିବ ହେ ଦୂତ-ବର
ଅଶାତୀତ ଫଳ
ଲଭେ କଷ୍ଟ ଜାଳ
ଅବଶ୍ୟ ହେବ ପାସୋର ।
ରୌପ୍ୟ ମୁଦ୍ରା କେତେ
ଅଣି ଦ୍ୱିଜହସ୍ତେ
ସମର୍ପିଲେ ଦମୟନ୍ତୀ
୨ପାଥେୟ ସେ ସିନା
ଅନେ ନୋହୁ ଘେନା
କୋମଳ-ସ୍ୱରେ ଜଣାନ୍ତି ।
ପର୍ଣ୍ଣାଦ ସ୍ୱବାସେ
ଯାଇ ପ୍ରିୟା ପାଶେ
ଜଣାଇ ନେଲେ ବୃତ୍ତାନ୍ତ
ଭାଗ୍ୟଲକ୍ଷ୍ମୀ ଅମ୍ଭ
ଶିରେ କଲ ଠାବ
(କହେ) ଲଭିବା ଧନ ବହୁତ ।
କାର୍ଯ୍ୟ ସିଦ୍ଧେ ମାତ୍ର
ସର୍ବ ଶୁଭାଗମ
ହୋଇବ ଅମ୍ଭ ଅଳୟେ

---

୧ ଦେବୀ, ୨ ରାସ୍ତାଖର୍ଚ୍ଚ

ନିତ ଭର ଧ୍ୟାନ ଦେବ ଦେବୀଗଣେ
ରହିବେ ଅମ୍ଭ ସହାୟେ ।
"ଦୈବ ଅନୁକୂଳ ଧନ, ମାନ, ବଳ
କରଏ ପରିବର୍ଦ୍ଧିତ
ସେହେତୁ ଈଶ୍ୱର ଚିନ୍ତନ୍ତି ସାର
ତାହୁ ହେଉ ଅବିରତ ।
ତାଙ୍କ ପ୍ରତିକୂଳେ ବିଭବ ସମୂଳେ
ହୁଅଇ ପର୍‌ ବିନାଶ
ଯଥା ପ୍ରତିକୂଳ ବାୟୁ ଯୋଗେ ନାବ
ସାଗରେ ହୁଅଇ ଧ୍ୱଂସ" ।
ମନ ବିମୋହନେ ଅଧିକାଂଶ ଧନ
ସମର୍ପି ପତ୍ନୀର କରେ
କରିଲେ ପ୍ରୟାଣ ଦେବେଶ ସ୍ମରଣ
ମଙ୍ଗଳ ଗାନ ସୁସ୍ୱରେ ।
କେମାଙ୍କ ପାଳଣି ଗଲେ ସେ ବ୍ରାହ୍ମଣ
ପଚ୍ଛରିଲେ ପ୍ରଶ୍ନାବଳୀ
ଉତ୍ତର ନ ଲଭି ମନେ ହେଲେ କ୍ଷୋଭି
ନିଜ ଦୁରଦୃଷ୍ଟ ଭଳି ।
ଶେଷେ ସେ ୧ସାକେତେ ହେଲେ ଉପଗତ
ଗମିଲେ ରାଜ ସଦନେ
କରିଲେ ବିବୃତ କେମା ପ୍ରଶ୍ନ ତତ
ବହୁ ଅପ୍ରସନ୍ନ ମନେ ।

---

୧ ଅଯୋଧ୍ୟାପୁରେ

ଉତ୍ତର ନ ଦେଇ ସର୍ବେ ମୌନ ହୋଇ
ରହିବା ଦେଖିଲେ ଦୂତ
ନିଦାନିଲେ ତହିଁ ଏକ କୃଷ୍ଣଦେହୀ
ଥିଲେ ମାତ୍ର ପ୍ରସ୍ତବତ ।
ବିଦାୟ ନ ଲଭି ନମସ୍କାର ଲଭି
ଫେରିଲେ ସେ ରାଜପୁରୁ
"ଅର୍ଥଲୋଭୀ ଜନେ କି ୧ଅଭିବାଦନେ
କେବେ କି ଧରିବେ ଗୁରୁ ?
ଅର୍ଥଲୋଭୀ ଦଣ୍ଡୀ କେବ କି କେ ଭଣ୍ଡି
ଶୁଷ୍କ-ଦଣ୍ଡବତ ଦେଇ
ଶ୍ୱାନ ଅନାହାରେ ମାତ୍ର ସମାଦରେ
ରଖିଲେ ମାନବ କେହି" ।
ବିଷଣ୍ଣ ବଦନେ ସେ ଗଲେ ପଥନେ
ପ୍ରତ୍ୟାଗମନାଭିମୁଖୀ
ଭେଟିଲେ ସେ ମାର୍ଗେ କୃଷ୍ଣାଙ୍ଗ ଯୁବକେ
ସେହି ତାଙ୍କୁ ନେଲେ ଡାକି ।
ପଚାରିଲେ କାହିଁ ତବ ବାସ ସ୍ଥାନ
କହିଲ ଗୁପ୍ତ ଚରିତ
ତବ ମୁଖୁଁ ପ୍ରଶ୍ନ ଯେହି ୨ଉଦ୍‌ଗୀରଣ
କାହାଦ୍ୱାରା ସେ କଥିତ ।
ଉତ୍ତର ଅପେକ୍ଷା ନ କରି ସେ ବ୍ୟାଖ୍ୟା
କଲେ ତାହାଙ୍କ ଉତ୍ତର

୧ ପ୍ରଣାମେ, ୨ ବାହାର ହେବା

ସତୀ କେହୁ ବସ୍ତ୍ର ସ୍ୱପତି ହରଣେ
କରେ ଅପରେ ପ୍ରଗ୍ଭର ।
କେହ୍ନେ ପତି ନିନ୍ଦା ତା ହୃଦୟେ ଫନ୍ଦେ
ଜାଣି ସତ୍ୟ ସମାଗ୍ଭର
କ୍ଷୁଧା ବାଧା ଯୋଗେ ସ୍ୱାମୀ ନେଲା ବାସ
ହେଲା କି ତା ଅସୁନ୍ଦର ।
ପତ୍ନୀ ଧାରଣେ ହୋଇ ସେ ୧ଉନ୍ମନା
ଛାଡ଼ିଲା ନିଜ ବସନ
ଦୁର୍ଦ୍ଦଶା ବଶତଃ ପକ୍ଷୀ ନେଲେ ବସ୍ତ୍ର
ତେଣୁ ସେ ଲେଡ଼ିଲା ଅନ ।
ଗହନ କାନନେ ଥିଲେ ଯେ ଦମ୍ପତି
ଅନନ୍ୟୋପାୟ ସେ ହୋଇ
ନିଜ ପରି-ବାସ ପଣନ୍ତ ସେ କାଟି
ପରଧାନ କଲା ତାହୁ ।
ଲଜ୍ଜା ଭରେ ନଗ୍ନେ ନ ରହୁ କେ ଜନ
କାଟିଲା ପତ୍ନୀ ବସନ
ସେ କଲା ଅନୀତ ସେ କଥା କୁମତ
ବଶେ କରବେ ରଚନ ।
ବିଧି ବିଧାନ ଯେ ଦୃଢ଼େ ବାନ୍ଧ ଦେଖି
ସବବେ କରେ ଗ୍ଭଳତ
ସତୀ ବୋଲଇଣ ପତି-ଶ୍ରେଷ୍ଠ ନିନ୍ଦା
ଦେବା କି ହେଲା ଉଚିତ ।

---

୧ ଉତ୍କଣ୍ଠିତ

ଅର୍ଦ୍ଧାଙ୍ଗିନୀ ଯେହୁ ସୁଖେ ଦୁଃଖେ ସେହୁ
ପତି ସଙ୍ଗତେ ଭାଗିନୀ
ସୁଖେ ପତି ସେବା ଦୁଃଖେ ତାର ନିନ୍ଦା
ବାଢ଼ିବ କେଉଁ ୧ଭାମିନୀ ।
ନିଜ ପତି ନିନ୍ଦା ନ ସହୁଣ ସତୀ
ନିଜ ଅଙ୍ଗ ଅଗ୍ନିକୁଣ୍ଡେ
ଦହିଥିଲେ ବୋଲି ପୁରାଣ କାହାଣୀ
ନ ଶୁଣେ କି ସତୀ ଦଣ୍ଡେ ।
ଦୁଃଖାର୍ଣ୍ଣବେ କାଳେ କେ ଭାସିବା ବେଳେ
ତାର କି ରହେ ବିବେକ
ସୁବିଗ୍ଧରେ ସିନା ସୁଜ୍ଞାନ-ମାନବେ
ବୁଝିବେ ଅବସ୍ଥାତକ ।
ସନ୍ନିପାତେ ପଡ଼ି ସ୍ୱପତ୍ନୀ କାମୁଡ଼ି
ନେଲେ ପତ୍ନୀ ନିନ୍ଦବକି
ଆପଦ ସମୟେ ମିତ୍ର ଶତ୍ରୁ ହୁଏ
କହନ୍ତି ପରି ବିବେକୀ ।
ଗୋବତ୍ସ ଭଉୟୁ ନିତାନ୍ତ ଅସ୍ଥିର
ହେଲେହେଁ ଦୋହନ କାଳେ
ମାତା ପାଦେ ଶିଶୁ ବନ୍ଧା ଯାଏ ପରି
ମାତା କି ବଇର ବେଳେ । (ହେଲା)
ମରଣ ସମୟେ ସନ୍ତାନ ୨ଧର୍ଷଣା
ନୁହେ ବୋଲି ବିବେଚିତ

---

୧ କୋପନା ସ୍ତ୍ରୀ, ୨ ପରାଭବ

ରସାନ୍ଧିତ ଚିତ୍ତ ଯେ ସତୀ ବିସ୍ମୃତ
କରେ ମାନ ସେ ନିଦ୍ୱିତ ।
ଅବଧ୍ୟ କରଣ ଅଟେ ମାନ ହୀନ
ସତୀତ୍ୱ ଜ୍ୟୋତ୍ସ୍ନା ଆଗରେ
ସତୀ ନାରୀ ସୌଧେ ଅବା ବନ ମଧ୍ୟେ
ଅରକ୍ଷେ ରହେ ସୁଖରେ ।
ତା' ଗୁଣ ପ୍ରବଳ ନୟନେ ଅନଳ
ହୃଦ ୧ଘନସାର ସମେ
ତାହାର ସମୀପେ ଗମନେ ଅକ୍ଷମ
ଅନ୍ତ କୁରେ, ଅଧମେ ।
ପତି ଜାଣି ପତ୍ନୀ ସତୀ, ପତିବ୍ରତା
ଯୁଡ଼ିଲେ ତାଙ୍କୁ କାନନେ
ପତି ବା କି ନିନ୍ଦା- ପାଶେ ହେବ ବନ୍ଧା
ଯେ ତ୍ରେତେ ଯାତନା ଗଣେ ।
ବିତବାଦ ପୂର୍ଣ୍ଣ ଯେ ଥିଲେ ଭୁବନେ
ସେ ହେଲେ ନିରନ୍ଧ ପ୍ରାଣୀ
ବିଶ୍ୱକର୍ତ୍ତା ନିନ୍ଦା କରିବାକୁ ଇଚ୍ଛା
ଯେ ନର ଅଟେ ବିଜ୍ଞାନୀ ।
ସତୀ ଧର୍ମେ ପତି ଦେବତା ୨ପ୍ରତିକ
ପତିଠାରୁ ଗୁରୁ କେହୁ
ନାହିଁ ତ ଜଗତେ ତାହାର ନିନ୍ଦତେ
ସତୀ ବୋଲାଇବ କେହୁ ।

---

୧ କର୍ପୂର, ୨ ସମାନ

କହୁ କହୁ ଗଣ୍ଡ    ମଣ୍ଡଳ ଯୁବାର
ସିକ୍ତ ହେଲା ଅଶ୍ରୁ ନୀରେ
କଣ୍ଠ ଅବରୋଧେ    ସ୍ପଷ୍ଟ ହୀନ ଶବ୍ଦେ
ବାହାରିଲେ ମୁଖ ଦ୍ୱାରେ" ।



## ତ୍ରୟୋଦଶ ସର୍ଗ

ସେ ଦୃଶ୍ୟେ ବିମୃଷ୍ୟ-    କାର୍ଯ୍ୟ ସେ ବିରସ
ହୋଇ ଚଳିଲେ ସ୍ୱମାର୍ଗେ
କିଛି ଦିନ ପରେ    ହେଲେ ଭୀମପୁରେ
ଦେଖିଲେ ଭୀମଜା ବେଗେ ।
କହିଲେ ପ୍ରଶ୍ନକୁ    କେହି ଉତ୍ତରକୁ
ନ ଦେଲାରୁ ଋତୁପର୍ଣ୍ଣ-
ପୁରେ ପ୍ରବେଶିଣ    ପ୍ରଶ୍ନେ ଉତ୍ଥାପନ
କଲେ ହୋଇଣ ବିପନ୍ନ ।
ସଭାରେ କେ ହେଲେ    ଉତ୍ତର ନ ଦେଲେ
ବିକଳାଙ୍ଗ ଯୁବା ମାତ୍ର
ଶୁଣି ମୋ ଅବୃତ    କ୍ଷୀଣ କର ମତ
ହେଲେ କେବଳ ବିରକ୍ତ ।
ଯାଉଁ ଯାଉଁ ପଥେ    ସେ ଭେଟିଲେ ମଠେ
ଉତ୍ତର ଦେଲେ ନିଃଶ୍ରମେ ।
ରହସ୍ୟ ପ୍ରଶ୍ନକୁ    ତାହାଙ୍କ ଉତ୍ତର
କହିଲେ ବିପ୍ର ଅଶ୍ରୁନେତ୍ରେ ।

ସେହୁ ନଳ ବୋଲି ନିଦାନିଲେ ଝାଳୀ
ଜନନୀ ସଙ୍ଗେ ମିଳଣି
ତାହାର ଉତ୍ତର କହୁ ସମଗର
କଲେ ପର୍ଣ୍ଣାଦେ ସନ୍ଧାନ ।
ନଳଙ୍କ ମିଳନ ହେଲେ ବହୁ ଧନ
ଲଭିବେ ସେ ପୁରସ୍କାର
କହୁଣ ସଚ୍ଚରେ ତୋଷି ଦୂତ ବାକ୍ୟେ
ମନେ ହେଲେ ହର୍ଷଭର ।
"ନିଶାରେ ମୁଦ୍ରିତ ଥିଲା ଯେ କମଳ
ଅଣା-ତପନ ପ୍ରକାଶେ
ପ୍ରସ୍ଫୁଟିତ ହୋଇ ଯଥା ରହେ ଶୋଭି
ତଥା ମୁଖ ଦ୍ୟୁତ ହସେ ।
୧କୁଶଳଯୁ ପୂର୍ଣ୍ଣ- ସ୍ଥାନେ ତୋଷ ମନେ
ଥିଲେ ହରଣ ଦମ୍ପତ
ଦୁରଦୃଷ୍ଟ ବ୍ୟାଧ ମନେ ବହୁ ସଧ
କଲା ତାଙ୍କ ପୃଷ୍ଠେ ଗତ ।
କ୍ରୂର-କରୁଁ ଦୁହେଁ ପରିତ୍ରାଣ ପାଇ
ଦଉଡ଼ି ଗଲେ ପ୍ରଖର
ଗତ ତାରତମ୍ୟ ବଶୁଁ ଦୁଇଜଣ
ବିଚ୍ଛିନ୍ନ ହେଲେ ନିକର ।
ହରଣୀ ସ୍ୱଜନ ସଙ୍ଗତେ ମିଳନ
ହେଲା କିଛୁ କାଳପରେ

---

୧ କୋମଳ ଘାସ

ହରଣ ତଦନ୍ତ ଲଭେ, ତାର ଅନ୍ତ
ଶୀତଳ ହେଲା ତ ବାରେ ।
ଦମୟନ୍ତୀ ହୃଦ- ୧ଉତ୍ସାହାରବିନ୍ଦ
ବିପ୍ର ବଚନ-ତପନ
କଲା ବିକଶିତ ସେ ହେତୁ ଅମିତ
ତୃପ୍ତ ହେଲେ ସେ ବହନ ।
ତାହାଙ୍କ ଦର୍ଶନ ଲଭେ ସେ ଉଦ୍‌ବିଗ୍ନା
ହୋଇ କରିଲେ କୌଶଳ
ମାତା ଅଙ୍ଗୀକୃତେ ଜନକ ଅଜ୍ଞାତେ
କଲେ ଯେ ସିଦ୍ଧାନ୍ତ ମୂଳ ।
ପୁନଃ ସ୍ୱୟମ୍ବର ଯୋଗାଡ଼ ପ୍ରଚୁର
କରିନେଲେ ଦମୟନ୍ତୀ
ଜନକରେ ତାହା କରିନେବା ସ୍ପୃହା
ଛଦ୍ମେ ତାଙ୍କ ଗଲା ମାତ ।
ପ୍ରଥମେ ବରଣି କଲେ ନଳ ଗୁଣି
ଜାୟା ଛାଡ଼ି ସେ ଅଦୃଶ୍ୟ
ରହୁବା ବଶତଃ ସାମାଜିକ ମତ-
ସ୍ୱୟମ୍ବର କରିବେ ସେ ।
ସ୍ୱଜନେ ନ ଲୋଡ଼ି ଋତୁପର୍ଣ୍ଣେ ଲୋଡ଼ି
ପଠାଇଲେ ଶୁଭ-ଲେଖା
ସାରଥି ତାଙ୍କର ଯେଣୁ ନଳବର
ପହଞ୍ଚିବେ ନୋହୁ ଶଙ୍କା ।

---

୧ ଉତ୍ସାହ ରୂପକ ପଦ୍ମ

ଅସିଲେ ବାହୁକ    ସରବେ ଫୁଲକ
ହେବେ ତ ସେ କଥା ସ୍ଥିର
ବିଦର୍ଭ ଅକାଶ    ଦୁଃଖ-ଘନାଶ୍ରିତ
୧ଭାସ୍କର ହେବ ନିକର ।
ନନ୍ଦନା ମୀମାଂସା    ଶୁଣି ଭୀମଯୋଷା
ସୁତାକୁ କଲେ ପ୍ରଶଂସା
୨ସୁପ୍ରଣିଧି-ବତ୍ସ-    ଭାର ତାଙ୍କ କରେ
ପ୍ରୀତେ ଛଡ଼ିଲେ ସହସା ।
ସୁଦେବ ବ୍ରାହ୍ମଣେ    ପେଷି ଦୂତ ପଣେ
କହିଲେ କହିବ ସଙ୍ଗେ
ଭୀମ ପୁରେ ସର୍ବେ    ଲୋଡ଼ନ୍ତୁ ସଜନ
କରିବେ ସେ ନିଷ୍ଠେ ବିଜେ ।
ଦେଖି ସେ ଜେମାଙ୍କୁ    କରେ ବାହୁକୁ
ଜଣନ୍ତୁ ସେ ଏବେ ତୋର
ନଳଙ୍କ ସତୀଙ୍କ    ୩ଉଦନ୍ତ-୪ଉଦକ
ଲଭେ ଶୁଷ୍କ ଲତା ପରି ।
ତାଙ୍କ ଭାବ ସ୍ରୋତ-    ସ୍ଥିତି ବ୍ୟଗ୍ରଗତ
ଜେମା ଅଟକ ସେକ୍ଷଣି
କହିଲେ ବିଶ୍ୱାସେ    ଚଳିବ ସାକେତେ
ଅମନ୍ତ୍ରିବ ନରମଣି ।
କାଲି ସ୍ୱୟମ୍ବର    ଜନ ରହେ ସ୍ଥିର
ଗୁପ୍ତେ କହିବ ନରେଶେ

---

୧ ତେଜୀସ୍ଥାନ, ୨ ଦୂତ, ୩ ଖବର, ୪ ଜଳ

ସମସ୍ତ ଅନ୍ତରେ ଏଥେ ହେଲ ମୁହିଁ
ମୌଳିକ ରଜା ଅଦେଶେ ।
କ୍ଷେମାଙ୍କ ପାଳଣ ସୁଦେବ ବ୍ରାହ୍ମଣ
ପହୁଞ୍ଚି ଅଯୋଧ୍ୟା ପୁରେ
ରଜାଙ୍କ ଦୂରତେ ହେଲେ ଉପଗତ
ଜଣାନ୍ତି ରଜା ଛାମୁରେ ।
"ମୁଁ ଯେଣୁ ସଭକ ନଗର ଗୃହଳ
ବ୍ରଜନ-ବିଶ୍ୱାସ ପାତ୍ର
ବ୍ରଜନ ଦମ୍ପତି ମୋତେ ବହୁ ପ୍ରୀତି
ପଠାଇଲେ ମତେ ଦୂତ ।
ସୁଗୁଣ ସମ୍ପନ୍ନା ଦମୟନ୍ତୀ କେମା
ସର୍ବେ ଜାଣନ୍ତି ଭାରତେ
ରୂପବତୀ ପାଣି- ଗ୍ରହଣେ କେ ମାନୀ
ନୋହିବ ବା ନିଜହିତେ ।
'ମାଳତୀ ସୁମନ- ମନ ବିମୋହନ
ଫୁଟିଲେହେଁ ବନଦେଶେ
୧ଗନ୍ଧ-ବହ ଗନ୍ଧ ପ୍ରସାରିତ ରଙ୍ଗ
ଭ୍ରମର ମତ ଅକର୍ଷେ ।
ସୁଗୁଣୀ ସୁଗୁଣ ପ୍ରଜ୍ଞ ବିଜାଣିତ
ହର ନାଅଇ ନାରତେ
ବିପସ୍ଥିତ ଜନେ ବିପସ୍ଥିତ ଗୁଣ
ବାଢ଼ୁଥାନ୍ତି ସିନା ମର୍ତ୍ତ୍ୟେ' ।

୧ ପବନ

ପରଦ୍ଧନ ସ୍ୱୟ- ମ୍ବର ରହେ ସ୍ଥିର
ଜାଣ ଅହେ ମହାରାଜା
ତବ ଶୁଭାଗମ ଲୋଡ଼ନ୍ତି ସଜନ
ଅବର ସର୍ବ ପରଜା ।
ସୁଯୋଗ୍ୟା ରମଣୀ ଯୋଗ୍ୟପାତ୍ର ଚାହିଁ
ବରିବେ ଭ୍ରମ ବିହୀନ
"ବିରିଞ୍ଚି କି କେବେ ରାଜହଂସ ଛାଡ଼ି
ଆନେ ରଖେ ଅଭିମାନ ।"
ରାଜା ମନ-ମୀନ ଦୂତଙ୍କ ୧ଭାଷଣ-
୨ବଡ଼ିଶରେ ହୋଇ ଧୃତ
ଉପାୟ ଚିନ୍ତନେ ବାହୁକେ ଆହ୍ୱାନ
ଅଜ୍ଞା ପଠାଗଲା ଦ୍ରୁତ ।
ତାଙ୍କ ଆଗମନେ କହିଲେ ୩ପ୍ରଚ୍ଛନ୍ନ
ଦମୟନ୍ତୀ ସ୍ୱୟମ୍ବର
କାଲି ହେବ କହି ଦୂତକୁ ପଠାଇ-
ଛନ୍ତି ଭୀମ ନରବର ।
ବହୁଦୂର ପଥ କାହୁଁ ଅସ୍ୱ ରଥ
ଚଳିବ ଏକ ଦିନକେ
ସେ ଚିନ୍ତା-ଘୂର୍ଣ୍ଣିତ- ମସ୍ତକ ମୋହର
ରଖେ ମତେ ବହୁ ଦୁଃଖେ ।
ମଣିଲେ ଯେ ନଳ ସତେ କି ବୃଥାର
ନିକ୍ଷେପିଲେ ଯେ ଅଶନି

---

୧ ଉକ୍ତି, ୨ ବନଶୀ, ଲଠି, ୩ ଗୁପ୍ତେ

ଦୁଃଖସରେ ଭସି- ଥିବାରୁ ଅଜ୍ଞାତେ
ପ୍ରିୟା ସ୍ୱୟମ୍ବରେ ମାନି ।
ସତେ କି ମୋ ପ୍ରାଣ- ପ୍ରିୟା ଦମୟନ୍ତୀ
ଅନ ସ୍ୱୟମ୍ବରେ ରତା
ତା ପ୍ରାଣେ ମୋ ପ୍ରାଣ ଥିଲା ବଜଡ଼ିତ
ରଜନୀରେ ଜ୍ୟୋତ୍ସ୍ନା ଯଥା ।
୧ବିଶ୍ୱାସ୍ୟ ସେ ନୋହୁ ବିଶ୍ୱାସ ହେବାର
ଅନ୍ତର୍ଯ କଥା ନିଷ୍ଟମ୍ଭ
ସତ୍ୟାସତ୍ୟ ବାଣୀ ହୋଇଲା ତର୍କିତ
ପରେ ସଦ୍‌ଭାବ ଉଦୟ ।
ଦୂତକୁ ପଠାଇ ମୋର ବାର୍ତ୍ତା ନେଇ
ଥିଲେ ସୁଚତୁରା ଗୋସ୍ୱା
କୁହିମେ କିବା ସେ ପୁନଃ ସ୍ୱୟମ୍ବରେ
ପକାଇଲେ ଏବେ ହୁର ।
ଅସତ୍ୟ ଖବର କଲେ ସେହୁ ସ୍ଥିର
ମତେ ନେବା ପାଇଁ ଛଳ
କରିନେଲେ ସେହୁ ମୋର ପ୍ରାଣସହୁ
ମୋ ଦେଖା କରଣ ମୂଳ ।
ମୁଁ ଯଥା ସାକ୍ଷାତ- ଲାଳସା ବ୍ୟାକୁଳ
ତଥା ରହେ ତାଙ୍କ ମତ
ଘଟଣା ଜ୍ୱଳନ୍ତ- ଉଦାହରଣ ତ
ସଜାଇଲେ ବୁଦ୍ଧିମତ ।

୧ ବିଶ୍ୱାସ ଯୋଗ୍ୟ

ନୁହେ ତାଙ୍କ ବଳ ମାତ୍ର ଦୈବୀ-ବଳ
ଉଭୟ ହୃତ-ସାଧନେ
ପଞ୍ଚୋଷ୍ଟର ପଥ ସେହି ସେ ନିଯୁତ
ସେ ଭାବ ଅସଇ ମନେ ।
'ଏକ ଦିନକେ ତ ବହୁ ଦୂରପଥ
କେ ନେଇ ନପାରେ ରଥ
ମୁଁ ଯେଣୁ ବାହୁକ ସେ ଜାଣନ୍ତି ଠିକ
ମୁଁ ରଥ ନେବା ସମର୍ଥ ।
ମନସ୍ତାପାନଳ ହେଲା ୧ନିର୍ବାପଣ
ନଳ ଭଲେ ମନ ଶାନ୍ତ
କହିଲେ ରାଜନେ ନ ରହ ଭ୍ରମନେ
ନେବ ଏକ ଦିନେ ରଥ ।
ନଳର ଭାବନା ଅଟେ ମହାମନା
ମୁଁ ଶ୍ରେଷ୍ଠ ସାରଥୀ ବଣ୍ଟେ
ହତାଶ ନହୁଅ ତୋଷ ମନେ ରହ
ଯିବା ସ୍ୱୟମ୍ବର ଦେଶେ ।
ବାହୁକ ବଚନ ବର୍ଷା ୨ଘନବନ
ଭରସା-ତରୁ ଜୀଅଲି
ରଖିବାରୁ ସେହି ବହୁ ପ୍ରୀତି ହୋଇ
ଧନ୍ୟବାଦ ଦେଲେ କହି ।
ପ୍ରଫୁଲ୍ଲ ବଦନେ କହିଲେ ବାହୁକେ
ଅଦ୍‌ଭୁତ ତୁମ୍ଭ ଉତ୍ତର

---

୧ ଲିଭାଇବା, ୨ ମେଘ-ଜଳ,

ମୋ ହୃଦୟ ସିନ୍ଧୁ    କରେ ଉଦ୍‌ବେଳିତ
ହୋଇ ପୂର୍ଣ୍ଣ-ଶଶଧର ।
ସାୟଂକାଳେ ଗଲେ    ବିଦର୍ଭ ନଗରେ
ତୁମ୍ଭ ୧କୃତଜ୍ଞ ୨ସୁମନ-
ହାରେ ମଣ୍ଡି ହୋଇ    ଦମୟନ୍ତୀ ପାଇ
ସାର୍ଥ କରିବି ଜୀବନ ।
ପ୍ରତି ଉପକାର    ନ୍ୟୂନ ନୋହୁ ମୋର
ବରଂ ହେବ ୩ଗରୀୟାନ
କନକ, ରତନ    ମଣ୍ଡି ଅପଘନେ
ପ୍ରଦାନିବି କଣ୍ଠେ ଗ୍ରୀବ ।
ଅକ୍ଷକ୍ରୀଡ଼ା ବିଦ୍ୟା    ଗଣିତାଦି ଶାସ୍ତ୍ରେ
ଯେ ଅଛି ମୋର ଦକ୍ଷତା
ସେ ହେବେ ତୁମ୍ଭର    ଯୋଗ୍ୟ ପୁରସ୍କାର
ଛଡ଼ାଇବ ମନୁଁ ବ୍ୟଥା ।

## ଚତୁର୍ଦ୍ଦଶ ସର୍ଗ

ରାଜାଙ୍କ ଲଭିଣ    ମନ୍ଦୁରା ଗମିଣ
ବାଛିଲେ ସେ ଶୁଭ ହୟେ
ତ୍ୱରଣି, କ୍ଷୀଣ ୪ବାଜୀ    ନେଇ ସେହି ଖୋଜି
ଭେଟିଲେ ଅଯୋଧ୍ୟା ରାୟେ ।
ରାଜୋଚିତ ମତେ    ଶସ୍ତ୍ରାସ୍ତ୍ର ସଜ୍ଜିତେ
ପୂଜୁଁ ବାହାରି ରାଜନ

---

୧ କୃତଜ୍ଞତା, ୨ ପୁଷ୍ପ, ୩ ଗୁରୁତର, ୪ ଅଶ୍ୱ

ଦେଖିନେଇ ଅଶ୍ୱେ ବହିଲେ ହତାଶେ
ଯେଣୁ ମଣିଲେ ସେ ସ୍ଥାନ ।
ଆଶ୍ୱାସନା ବାକ୍ୟେ କହିଲେ ବାହୁକ
ମୁଁ ଜାଣେ ଅଶ୍ୱ ଲକ୍ଷଣ
ହେଯୁଞ୍ଜନ ନୋହି ପ୍ରୀତେ ନରସାଇଁ
ଚଢ଼ନ୍ତୁ ସ୍ୟନ୍ଦବ୍ୟ ଯାନ ।
ରାଜନ, ସାରଥୀ, ବାର୍ଷ୍ଣେୟ ସହିତ
ଅବେହନ୍ତେ ରଥବର
ଅଶ୍ୱେ ହୋଇ ସ୍ଥିତ ହେଲେ ଭୂ-ପତିତ
ରାଜା ହେଲେ ଯୋଭଭର ।
କ୍ରମନ୍ତେ ବାହୁକ ହୟେ ଚତୁଷ୍ଟୟେ
କଲେ ତେଜ, ଓଜବନ୍ତ
ଝଂଝାବାତ ବତ ୧ଉଚ୍ଚୈଃଶ୍ରବା ଜତ
ଗତ ସେ କଲେ ପ୍ରଶସ୍ତ ।
ଶତ, ଶତ ଯୁଣ ମାର୍ଗ ଅତକ୍ରମ
କରିନେଲେ ମୋଦବହି
ସାଗରେ ୨ଅନଳ- ପୋତ ପରକାର
ଦ୍ରୁତ-ଗତ କଲେ ସେହି ।
୩ବିୟତେ ଅନିଳ ଯଥା ରହେ ମିଳ
ତଥା ଅଦୃଶ୍ୟେ ଗମନ୍ତ
ପଲକକେ ବହୁ ଦୂର ଦଳନ୍ତ
କେହି କଳି ନ ପାରନ୍ତ ।

---

୧ ଇନ୍ଦ୍ରଙ୍କ ଅଶ୍ୱ, ୨ ଷ୍ଟୀମର, ବୋଇତ, ୩ ଆକାଶେ

ରାଜା ଉପବଣ ହେଲା ଭୂ-ପତିତ
ବାହୁକେ ହେଲା ରାଜାଜ୍ଞା
ସ୍ଥିରେ ରଖି ରଥ ଆଣ ସେହୁ ବସ୍ତ୍ର
ବାହୁକ କଲେ ଅବଜ୍ଞା ।

କହିଲେ ନରେଶେ ଛାଡ଼ ତାର ଆଶା
ପଡ଼ିଲା ସେ ବହୁ ଦୂରେ
ଅଦ୍ୟ ବିଦର୍ଭେ ପ୍ରବେଶ କାମନା
ଥିଲେ ତବ ମାନସରେ ।

ଯାଉଁ ଯାଉଁ ବାଟେ ଶାଖାଢ଼ା ପାଦପ
ଆସିଲା ଦୃଷ୍ଟି ଗୋଚରେ
ଶାଖା ପତ୍ର ସଂଖ୍ୟା କରିନେଇ ଲେଖା
କହିଲେ ରାଜା ସ୍ପଷ୍ଟରେ ।

ତୁମ୍ଭେ ନ ଦେଖିଲେ ବିଶ୍ୱାସ କି ଭଲେ
ହେବ କହି ନରବରେ
ବାହୁକ ଉତ୍ତରେ ସବୁ ଲେଖାଙ୍କର
ମାନିଲେ ରାଜା ଗଣନେ ।

ଖଳ-କଳି ପରି- ଗୃଳତେ ଯେ ନଳ
ଭୋଗିଲେ କ୍ଳେଶ ଅମିତ
ଅନ୍ତକାଳେ ଦୁର- ଦୃଷ୍ଟ ନଳଙ୍କର
ବିନାଶ ହେବା ନିଶ୍ଚିତ (ଜାଣିଲା) ।

ତାହାଙ୍କୁ ଏକାକୀ ଦେଖି ନେଲା କଳି
ନିଦାନ ତାହା ସୁକାଳ

ଦେଖୁଁ ବହୁର୍ଗତ ହୋଇଣ ପୁରତେ
ହାଜର ହେଲା ଚଞ୍ଚଳ ।
ବୋଇଲା ରାଜନ ଦ୍ୱେଷ ଭାବାପନ୍ନ
ହୋଇ ମୁଁ ଦେଲି ଯାତନା
ମୋ ଦୋଷ ସ୍ୱୀକୃତେ କ୍ଷମା ବହୁ ଚତ୍ତେ
ମୋ ତ୍ରୁଟି କର ମାର୍ଜନା ।
"କ୍ଷମା ପ୍ରାର୍ଥୀ ପୂର୍ବେ ଶତ୍ରୁ ଥିଲେ ହେଲେ
ସଜ୍ଜନ କରେ ଗ୍ରହଣ
ଶତ୍ରୁ ମିତ୍ର ସମ- ଭାବେ ଯେ ଗଣନ୍ତି
ମାତବନ୍ତ ପ୍ରାଣୀଗଣ" ।
ଶତ୍ରୁ-ଭ୍ରାତା ବାଳି- ଷଣେ ଅନାଦର
କଲେକି ଦେବ ଶ୍ରୀରାମ
ମିତ୍ର ଭାବ ବାଳୀ ସଂହାରଣେ ଛଳ
ଥିଲେ ସେ କହେ ପୁରାଣ ।
ନଳ କ୍ଷମା କଲେ ଦେଇ ଅଭୟକୁ
ଚଳିଲେ ସେ ରଥପାଶେ
ଅସ୍ତାଚଳେ ୧ସୁର ପ୍ରବେଶ ପୂର୍ବରୁ
ମିଳିଲେ ବିଦର୍ଭ ଦେଶେ ।
ଛୁତୁପର୍ଣ୍ଣ ପ୍ରୀତ ହୋଇଣ ଅମିତ
ନଳେ ଦେଲେ ପୁରସ୍କାର
ଅକ୍ଷକ୍ରୀଡ଼ା ଜ୍ଞାନ ଗଣିତ ନିଦାନ
ତାହାଙ୍କୁ ଦେଲେ ସତ୍ୱର ।

---

୧ ସୂର୍ଯ୍ୟ

ସ୍ୱାଗତ ୧କୁମୁଦ- ବନ୍ଧୁ ଦେଖି କେମା
୨କୁମୁଦ-ହୃଦୟେ ମୋଦ
ପ୍ରବେଶ କରଣ ନେଲ ଯେ ପ୍ରାସାଦେ
ନଳ ଦେଖିବାକୁ ସଧ ।
ଦେଖିଲେ ସେ ତନ ଜଣ ରଥାରୋହୀ
କରନ୍ତି ଶୁଭ ବିଜୟ
ପ୍ରାଣପ୍ରିୟ ନଳ ନ ଦେଖି ବିକଳ
ହେଲା ତାହାଙ୍କ ହୃଦୟ ।
ନଳ-ରାଜା ହୟେ ଭୀମ ରାଜାଲୟେ
ଅଣିଥିଲେ ଯେ ବାର୍ଷ୍ଣେୟ
ଶାଳେ ସେହୁମାନେ ହେ୍ଷାରବ ଦେଇ
ଚମକାନ୍ତି ରାଜାଲୟ ।
"ଥୋବେ ପଶୁ ନିଜ ସ୍ୱାମୀ ଚିହ୍ନୁଥାନ୍ତି
ଅଘ୍ରାଣେନ୍ଦ୍ରିୟ ବଳେତଃ
ତହିଁ ମଧ୍ୟୁଁ ହୟ ଏକ ତ ନିଷ୍ଟୟ
ଜାଣିଲେ ଯେ ଥିଲ ସତ୍ୟ" ।
ସେ ସଙ୍କେତ ଅସି ରାଣୀଙ୍କୁ ଅଶ୍ୱାସି
କହୁଲ ତାଙ୍କ ପ୍ରାଣେଶ
ପ୍ରବଗତ ହେଲେ ସେହ୍ନ ଶୁଭକାଳେ
ଚହିଁଲେ ସରଳେ ଅଶ୍ୱ ।
ଭୀମ ରାଜା ଶୁଣି ସ୍ୱଧ୍ୱରୁଁ ବାହାର
ପାଛୋଟିଲେ ଋତୁପର୍ଣ୍ଣେ

୧ ଚନ୍ଦ୍ର, ୨ କଇଁଫୁଲ

ମହା ସମାରୋହେ ନେଇ ତାଙ୍କୁ ଗୃହେ
ରଖିଲେ ତାଙ୍କୁ ବିଭବନେ
ଯଥାଯୋଗ୍ୟ ସତ- କାର ସମ୍ପାଦିତ
ହୋଇଲା ଯେ ରୁତୁପଣେ ।
ଶୁଭ ସମ୍ଭାଷଣେ ଦୁହେଁ ପରଷଣେ
ଲାଗିଲେ ଭୀମଙ୍କ ମନେ ।
ଭୀମ ନରପତି ହୋଇ ତୁଷ୍ଟମତି
କହିଲେ ଥରେ ସାକ୍ଷାତ
ଲଭିଥିଲି ପୂର୍ବେ ମୁଁ ରହଇ ଗର୍ବେ
ହେଲି ତ ଏବେ କୃତାର୍ଥ ।
ମୋର ଭାଗ୍ୟବଶୁଁ ମୋ ପୁରେ ଭେଟିଲି
ଯୋଗ୍ୟବୀର ନରମଣି
ଆଗତ କାରଣ ୧ ଜିଜ୍ଞାସିତେ ମନ
ବଳି ରହେ ଏହିକ୍ଷଣି ।
ପ୍ରଶ୍ନ ଜଣାଇଲା ମିଥ୍ୟା ସେ ପ୍ରବାଦ
ଦମୟନ୍ତୀ ସ୍ୱୟମ୍ବର
କେଉଁ କଉଶଳୀ କଉତୁକ ଭଳି
କଲା ବା ତାହା ପ୍ରଚାର ।
ସତ୍ୟ ସମାଚାର କଲେ ତ ଗୋଚର
ଲଜ୍ଜିତ ହେବେ ନିଦାନ
ସେ ହେତୁ ଅସତ୍ୟ କହିଲେ ରାଜନ
ସାକ୍ଷାତେ ବଳିଲା ମନ ।

---

୧ ପଚାରିବା ପାଇଁ

ବାଷ୍ପେର୍ଯ୍ୟୁ, ବାହୁରେ ନିବାସେ ବିଭିନ୍ନ
ପ୍ରକୋଷ୍ଠ ଯୋଗାଡ଼ ଚହେ
ଭଗ୍ନ ମନୋରଥା ହେବା ମନସ୍ୱିନୀ
ଦମୟନ୍ତେ ଘାରୁଥାଏ ।
ନଳ, ହୁଂତ, କାନ୍ତି, ଗୁଣ, ଦୁଃଖିତ
ଚିନ୍ତା ବହ୍ଣି ମୂରଛେ
୧ଇନ୍ଦ୍ରଜାଲି ବତ ଦେଖାଏ ବହୁତ
ଖେଳା-ପଚୂଡ଼ା ସାକ୍ଷାତେ ।
କଦା ମନାସନେ ହରଷ ଅସୀନେ
ବଦନେ ଫୁଟାଏ ହାସ
ପରକ୍ଷଣେ ଭବ ହୁଅଇ ବଳୟ
ଅର୍ଦ୍ର କରେ ଗଣ୍ଡଦେଶ ।
ବିଷାଦ-ନିର୍ଝର ନୀର-କଣାବତ
ଶୋଭଇ ମୁଖ ମଣ୍ଡଳ
ଜନନୀ ଅଗମ ଅତପ-ତପନ
ଶୁଖାଏ ତାହା ୨ତୃମୂଳ ।
କୁଟ ନୀତ ବିଶା- ରଦା ଯେ କେଶିନୀ
ଥିଲା ତାହାଙ୍କ ସଙ୍ଗତେ
ନଳଙ୍କ ଖବର ଅନାୟୂନ ସତ୍ତ୍ୱେ
ରାଣୀ ଧରିଥିଲେ ସାଥେ ।
ପର୍ଣ୍ଣାଦେ ଯା କହ୍ନ ଥିଲେ କେମାଦେଇ
ସେ ପ୍ରଶ୍ନ କରଣେ ଶିକ୍ଷା

---

୧ ଗାରୁଡ଼ିଆ, ୨ ସମଗ୍ର

ଲଭିଲ୍ କେଶିନୀ  ନଳ ନୋଇ ଚିହ୍ନି
ସମ୍ମୁଖେ ସେ କଲ୍ ବ୍ୟାଖ୍ୟା ।
ସେ ବାହୁକେ ଦେଖି  ପ୍ରତିଅଙ୍ଗ ଲକ୍ଷି
ପଚ୍ଚାରିଲ୍ ପ୍ରଶ୍ନଗୁଡ଼ିକ
ପ୍ରଥମ ବ୍ରାହ୍ମଣେ  ଯେ ଉତ୍ତରଗଣେ
ଅବୃତ ହେଲ୍ ସେତକ ।
କେଶିନୀ ପଚ୍ଚାରେ  ତୁମ୍ଭେ, ନରବର
ଅପର ସଙ୍ଗୀ କିଏସେ
ବାହୁକ ଉତ୍ତର  ଦେଲେ ସେ ବାର୍ଷ୍ଣେୟ
ନଳରାଜା ସାରଥି ସେ ।
ରଥ ଚାଳନାରେ  ରନ୍ଧନ କାର୍ଯ୍ୟରେ
ଦେଖି ମୋହର ପଟୁତା
ରାଜନ ସାଦରେ  ରଖନ୍ତି ଯେ ମୋତେ
ଅଶ୍ୱଶାଳେ କରି ନେତା ।
ଚତୁର କେଶିନୀ  ନ ବହଣ ଚୁନ
କହେ ନଳ ଗଲେ କାହିଁ
ବାହୁକେ କହିଲେ  ସେ କାନନେ ଗଲେ
ଠିକଣା ନଜାଣେ କେହି ।
ଅବର ବାର୍ଷ୍ଣେୟ  ନଳଙ୍କ ତନୟେ
ଛାଡ଼ିଲେ ମାତୁଳାଳୟେ
କହିବା ବୃତ୍ତାନ୍ତ  ସତ କି ଅସତ
ମତେ ତା ବିଦିତ ନୁହେ ।

ବାହୁକ ଇଙ୍ଗିତ ନେଇଣ ନୃପାଳ
କେଶିନୀ ସହାସ ମୁଖେ
କହିଲ ଅପଣ କପଟ-ନିଧାନ
ମୁଁ ଜାଣିଲି ସର୍ବ ସୁଖେ ।

"ଅଦିତ୍ୟ କିରଣ ରହିଲେ ଗୋପନେ
ନ ଜାଣେ କି କମଳିନୀ
ଶୋଧିତ-କନକ ଥିଲେ କର୍ଦ୍ଦମାକ୍ତ
ଚିହ୍ନେ ତ ହେମ-ବଣିଆଣି ।

କାନନେ ମାଳତୀ ରହିଲେ ଗୁପତେ
ନ ଜାଣେ କି ଭୃଙ୍ଗବର
ଘନାଚ୍ଛନ୍ନେ ଚନ୍ଦ୍ର ଥିଲେହେଁ ସୁଧାଂଶୁ
ଲଭେ କୁମୁଦ ଆଦର" ।

ମିଥ୍ୟା ଭାଷା କହି ସ୍ୱଜନେ ଭୁଲାଇ
ନେବା ମାତ୍ର ଅକାରଣ
ବିଧି-କୃପା-ବିଧୁ ହେଲେ ବିକଶିତ
ଜଗତ ହେବ ମୋହନ ।

ଦଉଡ଼ି କେଶିନୀ ଗଲା ରାଜପୁରେ
ସମ୍ଭାଷଣପୂର୍ବ ଭାବେ
ଭୀମଜାଙ୍କୁ କହି ହର୍ଷମତ୍ତ ହୋଇ
ତୋଷ ଦଶେ ଭାବେ ହାବେ ।

ରମଣୀ ବିବୃତ ଶୁଣି ଦମୟନ୍ତୀ
ଚିନ୍ତିଲେ ଅନ କୌଶଳ

ବୋଇଲେ ବାହୁକେ ଦେବ ଖାଦ୍ୟ ଦ୍ରବ୍ୟ
ବିରଞ୍ଚି ଜଳ, ଅନଳ ।
କହିଲେ ଦାସୀକୁ ଗୋପନେ ତୁ ରହି
ଦେଖିବୁ ରନ୍ଧନ ବିଧି
ଅନଳ, ସଲିଳ ବିହୀନେ ବାହୁକ
କେମନ୍ତ ପାରନ୍ତି ରାନ୍ଧି ।
ଅନୁଜ୍ଞାନୁଯାୟୀ ଦାସୀ ଲୁଚି ରହି
ଦେଖେ ତାଙ୍କ ରନ୍ଧାକ୍ରମ
ପାତ୍ର ସ୍ପର୍ଶେ ଜଳେ ପ୍ରପୂରିତ ହୁଏ
ତୃଣ ତ ହେଲା ୧ଇନ୍ଧନ ।
ଜଳାନଳା ଭାବ ହେଲା ବିଦୂରିତ
ସମାପ୍ତ ହେଲା ରନ୍ଧନ
ଦେଖି ନେଇ ଦାସୀ ଅଦ୍‌ଭୁତ ପ୍ରଣାଳୀ
ଆଶ୍ଚର୍ଯ୍ୟ ହେଲା ସେକ୍ଷଣ ।
ଦେବୋପମ କର୍ମ ବିସ୍ମିତ ସମ୍ପୂର୍ଣ୍ଣେ
କହିଦେଲା ଭୈମୀ ଆଗେ
ସନ୍ଦେହ-ପାଦପ୨ ତାହାଙ୍କ ନିପାତ
କଲା ସତ୍ୱର ସତ୍ୱରେ ।
ବିମୃଷ୍ୟକାରିଣୀ ମହା ବିବେକିନୀ
ଲାଗିଲେ ଆନ ପରଖେ
ମାଂସ ତରକାରି କିଛି କରି ଶେଷ
ବୋଇଲେ ଆଣ ମୋ ପାଖେ ।

---

୧ ଜାଳକାଠ, ୨ ବୃକ୍ଷ

ଆଦେଶ ପାଳନ ହେଲା ବାଧ୍ୟମତ
ଉରଙ୍କାଗ୍ନି କେମା ହାତେ
ପଡ଼ିବାରୁ ସେହୁ ପୂଲକିତା ହୋଇ
ବସିଲେ ତା ପରଷିତେ ।
ରସନା ଇନ୍ଦ୍ରିୟେ ନେଲେ ତା ପଙ୍କାଇ
କହିଲେ ନଳ ବ୍ୟତୀତ
ଆନ ଜଲେ ପାକ ଯେ ରାନ୍ଧଣା ତଦ
ସ୍ୱାଦେ ହେବ ପରାଭୂତ ।
ସେ ପୂର୍ଣ୍ଣାନୁପୂର୍ଣ୍ଣ ପରୀକ୍ଷା ବଶତଃ
ଜଣାନ୍ତି ନଳ ବାହୁକ
ନାମେ ରାଜାପାଶେ ରହନ୍ତି ଗୋପନେ
ନୁହେ ତା କଥା ୧ଅଲୀକ ।
ମଘବା ସାରଥି ବିନା କାହା ରଥ
ଗତ ହେବ ବାୟୁଜାତ
ଧନକେ ଅଯୋଧ୍ୟା ଛାଡ଼ି ବାଦରକେ
ଯାନ ହେବ ଉପଗତ ।
ମାଛଲୀ ଭାବନା ହେବ ନିଷ୍ଟେ ଜଣା
ପାକ-ବାଧି ସନ୍ଦର୍ଶନେ
ସଲିଳ, ଅନଳ ବିହୀନ ରନ୍ଧନ
କେ କରିବ ନଳ ଅନେ ।
ନଳ ହସ୍ତେ ହେ୍ଷା- ରବ ନ କରନ୍ତେ
ମାଛଲୀ ହେଲେ ଅଗତ

୧ ମିଥ୍ୟା

ସର୍ବ ସମାଗ୍ରୀର କରିନେଇ ଠୂଳ
ସ୍ଥିର କଲେ ନଳ ସେ ତ ।
ଦୁହିତା, ସନ୍ତାନ ଦେଇ ଦାସୀ ସଙ୍ଗେ
ପଠାଇଲେ ଚନ୍ଦ୍ରାନନୀ
କହିଲେ ତାହାକୁ ସମଗ୍ର ଚଳଣି
ନାଦାନରୁ ହୋଇ ଭିନ୍ନ ।
ଦେଖି ସେ ଦୁହିଙ୍କୁ ନଳ ସ୍ୱ କୋଳକୁ
ନେଲେ ପ୍ରେମେ ହୋଇ ବନ୍ଧା
୧ନେତ୍ରାମ୍ବୁ ରତନେ ମଣ୍ଡାଇଲେ ବେନି
ମାନସେ ବଢ଼ିଣ ୨ଶ୍ରଦ୍ଧା ।
କେଉଁ ଭାଗ୍ୟହୀନ ସନ୍ତାନ ସେମାନେ
କାହିଁ ହେଲେ ଏଥେ ଆସି
ବଦନ ଦର୍ଶନେ ନବ-ଭାବମାନେ
ମୋ ହୃଦେ ଯାଏ ପ୍ରବେଶି ।
କହୁ କହୁ ତାଙ୍କ କଣ୍ଠ ହେଲା ରୁଦ୍ଧ
ବାତ୍ସଲ୍ୟ-ପ୍ରେମ ପ୍ରବାହ
ପ୍ରବାହିତେ ଦେଲେ ତାଙ୍କୁ ଦାସୀ କରେ
ସିକ୍ତ ବଦନେ ନିଃସ୍ପୃହ ।
"ଅହା ପ୍ରେମ ରତ୍ନ କପଟ ସର୍ଜିତ
ହେଲା ଶଙ୍କକର୍ତ୍ତା କରେ
କି ବସ୍ତୁ ତହିଁରେ ରହେ ସଂଯୋଜିତ
ଅଦୃଶ୍ୟେ ଶଙ୍କମ ଖେଳେ ।

---

୧ ଅଶ୍ରୁ, ୨ ଗର୍ବ ପ୍ରକାଶ

ପିତା ପ୍ରାଣ-ସାର ଅଂଶ ହୋଇ ମେଳ
ସନ୍ତାନ ହୁଏ ଜନମ
ସେ ହେତୁ ଏଙ୍କରେ ଅନ ଆକର୍ଷିତ
ହୁଏ ବା ଚୁମ୍ବକ-ସମ ।"
ଦୃଶ୍ୟ ଦେଖି ଦାସୀ ମନେ ହୋଇ ତୋଷି
ନେଲ ବାଳିକା ବାଳକ
ଜେମା ପାଶେ ରଖି କହିଲ ସୁମୁଖୀ
ସେ ନଳ ମୁଁ କରେ ଠିକ ।
ଜେମା ଦୁଃଖ-ନାବ ଅଗାଧ ଅର୍ଣ୍ଣବେ
ଭାସୁଥିଲ ଅହରହ
ପରୀକ୍ଷା ସୁଫଳ ହୋଇ କର୍ଣ୍ଣଧାର୧
ସମ୍ମୁଖେ ହେଲ ଉଦୟ ।
କିବା ବଷଳ୍ପରେ ପ୍ରପୀଡ଼ିତା ନାରୀ
ଥିଲ ୨ଅନ୍ତକ ଅଗରେ
ଅନ୍ତରଙ୍ଗ-ମିତ୍ର ସତୀତ୍ୱ ନିଶ୍ଚିତ
ଟାଣି ରଖିଲ ମଧ୍ୟରେ ।
ହାରିଥିଲ ଜ୍ଞାନ ସେ ଆସିଲ ପୁନଃ
ସ୍ୱାମୀ ଦର୍ଶନ ଲାଳସା
ଶାସ୍ତ୍ରରକ ମାନ- ସିକ ବଳବତ୍ତି
ସେ ବୃଦ୍ଧି କଲ ସହସା ।
କହିଲେ ହରଷେ ଯାଅ ମାତା ପାଶେ
ଭୈଷ୍ମୀ ବିନତ ଘେନି

---

୧ ନାବିକ, ୨ ଯମ

ସକଳ ବୃତ୍ତାନ୍ତ        କର ଗୋ ଯୁବତୀ
ଅଗତ ମୋ ପ୍ରାଣମଣି ।
ବାହୁକ ବୋଲଇ        ଋତୁପର୍ଣ୍ଣ ସହ
ଅସିଛନ୍ତି ଅମ୍ଭପୁରେ
ପିତା ସଙ୍ଗେ ଭଳ        ଅଦେଶ ପ୍ରଦାନ
ଦର୍ଶନ କରବ ଥରେ ।
ତାଙ୍କ ପାଖେ ଯିବ        ଅବା ଅମନ୍ତ୍ରିବ
ତାହାଙ୍କୁ ଅମ୍ଭ ନଗରେ
ଦେବେ ଯେ ଅଦେଶ        ପାଳିବ ଅବଶ୍ୟ
ଜାଣନ୍ତୁ ସେ କଥା ସ୍ଥିରେ ।
ପିତା, ମାତା ଶୁଣି        ସକଳ ନିଦାନ
ଅତନ୍ତ୍ର ହୃଦ ବେଦନା
ଶାନ୍ତ କଲେ ବେଳେ        କୁତୂହଳ-ଜଳେ
ତେଣୁ ସେ ପ୍ରଫୁଲ୍ଲମନା ।
ସତୀ-ପରାକାଷ୍ଠା-        ନନ୍ଦନା ଚରନେ
ନ ହୋଇ ସନ୍ଦଗ୍ଧମନା
କହଲେ ସେ ଯାନ୍ତୁ        ସ୍ୱ-ସ୍ୱାମୀ ଭେଟନ୍ତୁ
ନକର କଛୁ ଭାବନା ।

---

## ପଞ୍ଚଦଶ ସର୍ଗ

ଜନକ-ଜନନୀ        ସ୍ୱୀକୃତ-ପୀୟୂଷ-
ଧାର ଲଭି କେମା-ଦେଈ ,

ଭାବିଲେ ଶୋଧିତ  ହେଲା ତାଙ୍କ ଗାତ୍ର
ପତି-ପ୍ରାଣା ହେବେ ସେହି ।
"ହସ୍ତେ ଦୃଢ଼ତର  ପ୍ରତ୍ୟୟ ଲଗାଇ
କଣ୍ଠା-ସୂତେ ପ୍ରହାରଣି
କଲେ ତାର ଗତି  ରହେ ଯଥାମତେ
ତଥା ସେ କଲେ ଗମନ ।"
ପତିଭକ୍ତା ହୋଇ  ତିନି ବର୍ଷ ରହି
ଭୋଗିଲେ ନାନା ଯାତନା
ସୁଦନ-ସୁଧାଂଶୁ  ମନୋହର କର
ବଶେ ସେ ହେଲେ ମୋହନା ।
ପୂରେ ଦେବ-ଶଙ୍ଖ  ହେଲା ନିନାଦିତ
ଶୁଭ ସମସ୍ତ ଶକୁନ
ଜଣାଏ ସଭିଙ୍କୁ  ନଳ, ଦମୟନ୍ତୀ
ଅନ୍ତ ହୋଇବେ ମିଳନ ।
ସ୍ୱୟମ୍ବର କାଳ  ଦମୟନ୍ତୀ ନଳ
ନୂହନ୍ତି ତ ଅଜ ସେହି
ବହୁ କଷ୍ଟତର  ୧ପରୀକ୍ଷାବ୍ଧିପାର
ପାରି ହୋଇଛନ୍ତି ଦୁଇ ।
ଅଗେ ପ୍ରେମ-ରସ  ଥିଲା ତ ଅଜ୍ଞାତ
ଶିଖିଲେ ତା କାଳକ୍ରମ
ପୂର୍ଣ୍ଣ ମନୋରଥ  ହୋଇ ପ୍ରେମ ସୌଧେ
ବସିବା ହେଲେ ସକ୍ଷମ ।

---

୧ ପରୀକ୍ଷା ସମୁଦ୍ର

ସେ ସମୟେ କାଳ       ଯା'ଗତ କୁଟିଳ
ବାଭଲେ ରଖେ ଉଭୟ
ବିବିଧ ଯନ୍ତ୍ରଣା       ୧କୁଠାର ଆଘାତେ
କମ୍ପିଲା ତାଙ୍କ ହୃଦୟ ।
"କଷ୍ଟ ଭୋଗେ ସିନା       ସୁମିଷ୍ଟ ଜୀବନ
ଯାହା କରେ ସୁଖ ନର
କଷ୍ଟ-ବିଭିଷିକା       ଯେ କରେ ଉପେକ୍ଷା
ସଂସାରେ ସେ ନୁହେ ବର ।
ସ୍ୱଚ୍ଛ ହେମ ସମ       ଅଟେ ଯେ ଜୀବନ
ଦହନ, ଦଳନ ପରେ
ନିଷ୍କଳଙ୍କ ହୁଏ       ଜନ ମନ ମୋହେ
(ତଥା) ମାନବ ବାଧା, ବିଘ୍ନରେ ।
ରସାଜ୍ଞାନ ଉପ-       ଲବ୍‌ଧି କରଣାର୍ଥେ
ଯାତନା ମାତ୍ର ୨ନିକଷ
ତହିଁରେ ୩ନିକାଷ       ହେଲେ ଥରେ ମାତ୍ର
ସୁଗୁଣ ହେବ ୪ନିକ୍ୱାଣ ।
ତହୁଁ ପାର ହୋଇ       ଥିବାରୁ ସେ ଦୁଇ
ପ୍ରେମ ତାଙ୍କ ଜ୍ୟୋତିର୍ମୟ
ଅଚ୍ଛେଦ୍ୟ, ଅଭେଦ୍ୟ       ଅଟଇ ସର୍ବଦା
କେବେହେଁ ନୋହିବ କ୍ଷୟ ।
ଚଳି ଦମୟନ୍ତୀ       ନଳଙ୍କ ପୁରତେ
ଛୁଟା ହେଲେ ପ୍ରୀତିଭରେ

---

୧ କୁହ୍ରାଡ଼, ୨ କଷ୍ଟିପଥର, ୩ ପରୀକ୍ଷିତ, ୪ ବିକାଶ

ତାଙ୍କ ବପୁ, କାନ୍ତ ଦେଖିଣ ଅଶାନ୍ତ-
ମାନସେ ରହିଲେ ଥରେ ।
ଦମୟନ୍ତୀ ମାନସ ମୂଳକେ ପୂରିତ
ସ୍ୱେଦ ଅପାଦ ମସ୍ତକେ
୧ପ୍ରସ୍ରବଣ ସମ ପ୍ରବାହିତ ହୋଇ
ଉଭୟେ ରହିଲ ଶୋକେ ।
ଉଚ୍ଚସ୍ବରେ ନଳ କଲକୁ କ୍ରନ୍ଦନ
ଦମୟନ୍ତୀ ତଥାମତେ
ଆଚରଣ କରି କମାଇଲେ ପୁଣି
ନିର୍ବେଦ ହେଲେ ସମସ୍ତେ ।
ନଳ ସହଚରୀ ଭେଣିମା ଚତୁରୀ
ହର୍ଷ, ବିଷାଦ ଜଡ଼ିତ
ଥିଲ ଛୁଡ଼ାଉଛି ଦୁଇ ଦେଖି ନେଇ
ନୋହି ୨ପ୍ରବୋଧନେ ରତ ।
କ୍ରନ୍ଦନ ସଙ୍ଗମେ ଖେଳିଲ ସ୍ପନ୍ଦନ
ସ୍ବର-ଭଙ୍ଗ ଅସି ପରେ
ଉଭୟେ ବନ୍ଧନ କଲ କାତୁଷଣି
ପ୍ରେମ ସଙ୍ଗୀ ପରଶାରେ ।
କଥୋପକଥନେ ହେବାକୁ ପ୍ରବୃତ୍ତ
ଦମୟନ୍ତୀ ଭାବି ମନେ
ବୋଇଲେ କାହାକୁ ଦେଖିଛକି କେବେ
ଯେ ପତ୍ନୀ ଛାଡ଼ିଲେ ବନେ ।

---

୧ ଝରଣା, ୨ ସାନ୍ତ୍ବନା

ତା' ୧ପ୍ରବେଶ ଜାଣି    କାହିଁଣ ବାପାନ୍ତ
ଏକାକିନୀ ଛାଡ଼େ ତାଙ୍କୁ
ବ୍ୟାଘ୍ର, ଭଲ୍ଲୁକାଦି    ହିଂସ୍ର ଜନ୍ତୁ ମୁଖେ
ପକାଇ ନିଜ ପ୍ରିୟାଙ୍କୁ ।

ବାକ୍ୟ-ଶର ବିଦ୍ଧ    ବିଦାରିତ ହୃଦେ
ଦେଲେ ସେ ନଳ ଉତ୍ତର
ସମୟ, ଅବସ୍ଥା    ଲକ୍ଷେ କେ ପୁରୁଷ
ବାଧେ କଳ୍ପ ସେ ଅସୁର ।

ନିଜ ଦୁଃଖେ ସୁଲୋ-    ଚନା ରାଜବାଳା
ଭାଗିନୀ ହେବା ଅଶ୍ରେୟ
ସେ ଭାବ ପୂରିତ    ସନ୍ତପ୍ତ ହୃଦୟେ
ଛାଡ଼ିଲ ପତ୍ନୀ ନିଶ୍ଚୟ ।

ସେ ମାନ ସାମାନ୍ୟ    ପତ୍ନୀ ଅଚରଣ
ଅଟଇ ତ ଗୁରୁତର
ଭରତା ଜୀବତେ    କାହିଁ ପତିବ୍ରତା
କରେ ଆନ ସ୍ୱୟମ୍ବର ।

ସେଥିରେ ପତିର    ନଥିଲେ ବିଗୁର
ପତ୍ନୀ କିପାଁ ପତି ଦୋଷ
ଦୁଃସମୟ ଜାଣି    ଘୋଷିବ ଭାମିନୀ
ସଦା ବହୁ ମନେ ରୋଷ ।

ବାକ୍ୟ ପ୍ରତିବାକ୍ୟ    ପ୍ରୟୋଗେ ଉଭୟ
ଲାଗିଗଲେ କଷ୍ଟକ୍ଷଣ

---

୧ ନିଦ୍ରା

ପବନ-ବଚନ ଗଗନୁଁ ଶ୍ରବଣ-
ଗୋଚର ହେଲା ସେକ୍ଷଣ ।
"ନଳ ତବ ଗୁଣ, ଚନ୍ଦ୍ରିକାନୁପମ
ଅଟନ୍ତି ଯେ ଦମୟନ୍ତୀ
ସିନ୍ଧୁ-ଜେମା ଦତ୍ତ ସୁଗୁଣ ମଣ୍ଡିତ
ରସାଧାମେ ବିହରନ୍ତି ।
ଶଶାଙ୍କେ କଳଙ୍କ ହରିଙ୍କେ କଳଙ୍କ
ଲାଗିଛୁ କହନ୍ତି ବୁଧ
ଅବର କନକେ ସେ ରହେ ଜଡ଼ିତ
ବ୍ୟବହାର ସ୍ଥାନେ ମଧ୍ୟ ।
ଦମୟନ୍ତୀ ରାଣୀ ନିଷ୍କଳଙ୍କ-ଦ୍ରୋଣୀ
ସତୀଗଣ ଶିରରତ୍ନ
କଳଙ୍କିତା ବୋଲି ତାହାଙ୍କୁ କହିବା
ନିର୍ଲଜ୍ଜେ କେହୁ ନାହିଁ ତ ।
ସେ ଅକାଶ-ବାଣୀ ନଳ ନେଇ ଶୁଣି
ନିରେଖିଲେ ପ୍ରାଣପ୍ରିୟା
ସଜଳ ନୟନେ ଦେଖା ଦେଖି ହୋଇ
ଜଳନ୍ତି ଅନ୍ୟୋନ୍ୟ ୧ହିୟା ।
ବିରୂପ କାରଣ ରାଣୀ ପଚ୍ଚାରନ୍ତେ
କର୍କୋଟ ନାଗ ଚରିତ
ଜଣାଇ ତାହାଙ୍କୁ ବାସ ଲଭିନେଲେ
ବପୁ ହେଲା ପୂର୍ବବତ ।

---

୧ ହୃଦୟ

୧ବିଧୂନୁଦ ମୁଖେ ପଡ଼ି ବିଧୂ ଦୁଃଖେ
ହାବିଥିଲି ନିଜ କାନ୍ତି
ତା ଗ୍ରାସୁଁ ବିମୁକ୍ତି ହୋଇ ବିଜେକଲି
ଗୃହେ ଗଲି ଦୂ୍ୟତ ମାତ ।
ଦମ୍ପତି ଇଙ୍ଗିତ ଭାବ, ହାବ ଦେଖି
କେଶିନୀ ଗଲି ବାହାରେ
ଅନନ୍ଦ ସରିତ- ପତି କଲ୍ଲୋଳିତେ
ଫିଙ୍ଗେ ତାକୁ ହାସପୂରେ ।
ତର ତର ହୋଇ ଦ୍ରୁତ ଗତି ବହି
ପ୍ରବେଶି ରାଣୀ ଛାମୁରେ
ମହା ମହିମାନ ସତ୍ୟ ଭଗବାନେ
(କରେ) ଧନ୍ୟବାଦ ଉଚ୍ଚସ୍ୱରେ ।
ଶୁଭ ସମାଚାର ବ୍ୟାଖ୍ୟାନ ସମଗ୍ର
ହସେ, ନାଚେ କୁତୂହଳେ
ସତ୍ୟର ବିଜୟ ହୋଇଲି ନିଶ୍ଚୟ
ଭୈମୀ, ନଳ ଏକ ହେଲେ ।
ଜାମାତା ନନ୍ଦନା ସଂଖୋଳନା ଅର୍ଥେ
ରାଣୀ ଦେଲେ ପରାମର୍ଶ
କହିଲେ ରାଜନ କାଲି ସେ ବିଧାନ
ଚଳାଇବା ନୋହି ଭ୍ରଂଶ ।
ସୁଖ, ଶାନ୍ତି ସମେ କାଟନ୍ତୁ ଯାମିନୀ
ନ ଦେବା ଦମ୍ପତେ ବିଘ୍ନ

୧ ରାହୁ

ବହୁକାଳ ପରେ ଶୁଭ ସମାଗମ
ବିଧି କଲେ ସଂଘଟନ ।
ପ୍ରେମ ଅନୁଭବୀ ରାଜା ନେଇ ଭାବ
କହିଲେ ପ୍ରେମ ସୁ-ସାର
ଧରି ବନ୍ଧୁ ଅଙ୍ଗ ହୃଦରେ ସରଗେ
ସୁଯୋଗ୍ୟ ପାତ୍ରେ ନିକର ।
ସେହୁ ପ୍ରେମ ଯେଣୁ ଅଟେ ସୁଧା ସମ
ନ କରେ କେ ଅନାଦର
କପଟେ ଜଡ଼ିତ ଥିଲେ କଳୁଷିତ
ସେ କାମୁତ କାମଚାର ।



## ଷୋଡ଼ଶ ସର୍ଗ

ଗାତ୍ରୋତ୍ଥାନ ପରେ ନଳ ଶୁଣି ନେଲେ
କମ୍ବୁ, ସିଂହାରବେ ପୁର
ନିନାଦିତ ଯେଣୁ କାରଣ ନିଦାନେ
ହୋଇଲେ ସେ ତତ୍ପର ।
ଦେଖିଲେ ସେ ଦାଣ୍ଡେ ଶୁକ୍ଳ ନିକେତନ[1]
ଶ୍ରେଣୀ-ବଦ୍ଧେ ଯେ ରହନ୍ତି
ପୂର୍ଣ୍ଣକୁମ୍ଭ ସହ ପ୍ରଦୀପ ସମୂହ
ପ୍ରତିଦ୍ୱାରେ ବିରାଜନ୍ତି ।
[2]ମାର୍ତ୍ତଣ୍ଡ-ମରୀଚି ବଶେ ଦୀପଜ୍ୟୋତି
କ୍ରମେ ରହଇ ସଙ୍କୀର୍ଣେ

---

୧ ପତାକା, ୨ ସୂର୍ଯ୍ୟକିରଣ

ସେ ହେତୁ ସେମାନେ  ଦର୍ଶକ ଦର୍ଶନେ
ଅସେ ବା ୧ଜ୍ୟୋତିରିଙ୍ଗଣେ ।
ଶତ-ଶତ-ଚୂତ  ପତ୍ରେ ହୋଇ ପୂତ
ତୋରଣା ପୁଷ୍ପେ ଗ୍ରଥିତ
ବିଶ୍ୱକାନ୍ତି ପ୍ରଭ-  ଆକାଶେ ନିକର
୨ସୁରେନ୍ଦ୍ର-ଧନୁ ନିନ୍ଦିତ ।
ଜୟ ଦମୟନ୍ତୀ-  ନଳ ନାମାବୃତ
ଯୋଗୁଁ ପୁର ଉଚ୍ଛୁଳିତ
ଦୀର୍ଘାୟୁ କାମନା  ନର, ନାରୀଗଣେ
କରଣେ ଥିଲେ ଉନ୍ମତ୍ତ ।
ରାଣୀ ଶୁଣି ସ୍ୱନ  ବାହାର ସେକ୍ଷଣ
ପ୍ରବେଶିଲେ ସ୍ୱାମୀପାଶେ
ନିରେଖିଲେ ଦାଣ୍ଡ  ମୋହନ ମଣ୍ଡନୀ
ଜନେ ଥିଲେ ପରିତୋଷେ ।
ଦିଶିଲା ସେ କ୍ଷଣି  ଭଦ୍ର-ଜନ ଶ୍ରେଣୀ
ଆସୁଥିଲେ ଶୁଭ୍ରବାସେ
ଦାଣ୍ଡ ବିମୋହନ-  ମଣ୍ଡନୀ ଦର୍ଶନ
କର ହେଲେ ନଳାବାସେ ।
କନ୍ୟା କ୍ୱାରି ଦୁଇ  ଭେଟିବା କାମନା
ପୁରତେ ବିଜେ ଦମ୍ପତି
ସେମାନଙ୍କୁ ଦେଖି  ଦୁହେଁ ହୋଇ ସୁଖୀ
ପ୍ରଣମିଲେ ଯଥାବିତ ।

---

୧ ଜୁଳୁଜୁଳିପୋକ, ୨ ଇନ୍ଦ୍ରଧନୁ

କହିଲେ ଅବର ଉତ୍ସବ ଅଶେଷେ
୧ବିଲୟ ହେଲା ଦୁର୍ଦ୍ଦିନ
ବହୁ କ୍ଳେଶ ଭୋଗ ଥିଲା ଅମ୍ଭ ଭାଗ୍ୟେ
ପରେ ଯେ ହେଲା ମିଳନ ।
ଅଶାତୀତ ଫଳ ହେଲା ସମାକୁଳ
ତବାଣୀବାକୁଁ ନିଯୁକ୍ତ
ସୁଖେ ସୁଧାପାନେ ହେଲେ ଯେ ଭାଜନ
ବିଷ୍ଣୁ-ମୋହିନୀ ବଶତ ।
ରାଜା ରାଣୀ ଦୁହେଁ କର ମୂର୍ଦ୍ଧାଘ୍ରାଣ
କହିଲେ ରାଜ-ବିଭୂତ୨
ଅଚିରେ ମଣ୍ଡିତେ ରହ ଏ ଭାରତେ
ଖେଳାଉ ସର୍ବସ କୀର୍ତ୍ତି ।
ଋତୁପର୍ଣ୍ଣ ନର- ଈଶ ଅସି ମିଶି
କହିଲେ ହେ ନଳରାଣି
ଗୋପନେ ମୋ ପୁରେ ରହିଲେ ଅପଣ
ଯଥା ହ୍ରଦେ ନାରାୟଣୀ ।
ଭାବଇ ମୁଁ ମନେ ଅଜ୍ଞାତେହେଁ ଦିନେ
କରିନାହିଁ ଅସମ୍ମାନ
ପୁର-ଜନେ ଯେବେ ଥିଲେ ଅସଭ୍ୟାବେ୩
ସେ ତ୍ରୁଟି କର ମାର୍ଜନ ।
ତବ କୃପା-ଦର- ଶନ ବଳେ ମୋର
ଦୁର୍ଦ୍ଦିନ ହେବ ହରଣ

---

୧ ବିନାଶ, ୨ ଐଶ୍ୱର୍ଯ୍ୟ, ୩ ଅସାଧୁମତେ

ବାରେ ବାରେ ଦେଖା     ମାଗ ମୋର ଭିକ୍ଷା
କର କୃପାକୁ ଗ୍ରହଣ ।
ଦମୟନ୍ତୀ ରାଣୀ     ହୋଇ ସୁଦୟିନୀ
କ୍ଷମନ୍ତୁ ମୋର ୧ଧୃଷ୍ଟତା
"ଖଞ୍ଜ ହୋଇ ନିଶା-     ପତେ କର ପାତ
ନେବା କଲ୍ ବାରେ ଚିନ୍ତା ।"
ସତୀ ପତିବ୍ରତା     ଯୋଗ୍ୟ ଯେଉଁ ଯୁବା
ହବ ତାଙ୍କ ପ୍ରେୟସୀ
ତ୍ରିଭୁବନେ ଅନ     କେହୁ ବିଦ୍ୟମାନ
ଅଛୁ ସେ କର-ଲାଳସୀ ।
"୨ମଧୁମାନ-ପୁଷ୍ପେ     ମଧୁପ ଅଦର
କରୁଥାଏ ମନୋବେଗେ
କୁଷ୍ମାଣ୍ଡ କୁସୁମେ     କେବେ କି ସେ ରମେ
ଥିଲେହେଁ ସେ କ୍ଷୁଧାଯୋଗେ" ।
ନଳ ଗୁଣାବଳୀ     ଗୁଣବତୀ ବାଳୀ
ମନ ବନ୍ଧନେ ବନ୍ଦିନୀ
ଅଟେ ବୋଲି ମାନ     ଅରବ ଜଗତ
ଜନେ ନେଉଥାନ୍ତି ମାନି ।
ବାର୍ତ୍ତେସ୍ୱ ଅଗତ     ହୋଇଣ ପୂରତେ
କହିଲେ ହୋଇ ବିନୀତ
ମୁଁ ତବ ସାରଥୀ-     ପଦୁଁ ୩ଅବ୍ୟାହତ
ନୋହିବ ଜାଣ ନିଶ୍ଚିତ ।

---

୧ ଅସହିଷ୍ଣୁତା, ୨ ମକରନ୍ଦ ପୂର୍ଣ୍ଣ ପୁଷ୍ପେ, ୩ ନିସ୍ତାର

ସେଠାରେ ମିଳିତେ ରାଜପୁର-ପଥେ
ଗମନ କଲେ ତା' ପରେ
ବାଳିକା, ବାଳକ ଉତ୍ଫୁଲ୍ଲ ନିନାଦ
ବ୍ୟାପେ ପୁରେ ସମଗରେ ।
କିନ୍ତୁ ଧନ ପୁରେ ସେ କର ବଣାସ
କ୍ଷୁବ୍ଧେ କାଳ କଟାନ୍ତି
ପତି, ପତ୍ନୀ ସୁତ- ସୁତା ସମ୍ମିଳିତେ
ପ୍ରେମ ସମ୍ପଦ ଭୋଗନ୍ତି ।
ତଥାପି ଦୁର୍ଦ୍ଦିନ ସ୍ୱସ୍ଥାନାଭିମାନ
କଲା ତାଙ୍କୁ ଆକର୍ଷଣ
ବେଳେ ବେଳେ ରାଜ୍ୟ ୧ପାରିଷଦ-ବୃନ୍ଦ
କରନେଲେ ସେ ସ୍ମରଣ ।
"କହନ୍ତି ସୁଜନେ ନିଜ ଜନ୍ମ ସ୍ଥାନେ,
ସରବେ ମଣନ୍ତି ଶ୍ରେୟ
ହେଲେ ସ୍ଥାନ ଚ୍ୟୁତ ନଖ, କେଶ, ଦନ୍ତ
ନରାଧ (ଅଟନ୍ତି) ଅଶୋଭନୀୟ" ।
ରାଜ୍ୟ ରାଜଗାଦି କାହାକୁ ଉନ୍ମାଦ
ନ ଅଣଇ କାହେ ମନେ
"ହେମ ପଞ୍ଜରସ୍ଥ ଥିଲେ ଶୁକ, ଶାରୀ
ସେ ଲୋଡ଼େ ବନ ଭବନେ" ।
ସେହେତୁ ସ୍ୱପୁର ଫେରିବା କାମରେ
ନଳ କହିଲେ ଶ୍ୱଶୁରେ

---

୧ ସଭ୍ୟ ସମୂହ

ନରପତ ଅଙ୍କ ଲଭି ବହୁ ସଙ୍ଖ୍ୟା
ସେନାଧ ହେଲେ ଯୁଦ୍ଧମୁଖରେ ।
ହସ୍ତ, ଗଜ, ସାଦୀ[1] [2]ନିଷାଦୀ ବରଙ୍ଗେ
ଭେଟିନେଲେ ନରବରଣେ

ରତ୍ନ, ଭୂଷା, ଧନ ବିବିଧ ପ୍ରଦାନ
(ରାଜା) କଲେ ଯୌତୁକ ସମାନେ ।
ଦମୟନ୍ତୀ ସହ- ଚମ୍ୱ ବୃନ୍ଦ ସହ
କଲେ ପ୍ରୟାଣ ସ୍ୱ-ଯାନେ

ନଳ-ବାମ-ଭାଗ ଶୋଭା ବୃଦ୍ଧି କଲେ
ଯଥା ଲକ୍ଷ୍ମୀ-ନାରାୟଣେ ।
ନଳ ରାଜଧାନୀ ପୁନରାବର୍ତ୍ତନ
ସମାଚାର ବାୟୁବେଗେ

ଚଳିଲା ନିଷଧେ ଜନେ ଅତି ମୋଦେ
ନିରେଖିଲେ ରାଜ ମାର୍ଗେ ।
ପୁରଜନେ ପୁର କଲେ ସୁସଜ୍ଜିତ
ସଙ୍କୀର୍ତ୍ତନ ଦଳ ଜମି

ନାଚି କୁତୂହଳେ ବିଷ୍ଣୁ ଗୁଣାବଳୀ
ଗାନେ ପୂତ କଲେ ଭୂମି ।
ସରବେ ଯେ ନଳେ ଭୂମିଷ୍ଠ ପ୍ରଣାମେ
ଗଲେ ତାହାଙ୍କ [3]ଗହଣେ

ଖଳ-ଦ୍ୱେଷୀ ନର- ପତି ଯେ ପୁଷ୍କର
ଲଗିଲେ ତା ନିବାରଣେ ।

---

୧ ଅଶ୍ୱାରୋହୀ, ୨ ଗଜାରୋହୀ, ୩ ରାଜାଙ୍କ ସଙ୍ଗେ

"ପ୍ରଦୀପ ନିର୍ବାଣ ଗନ୍ଧକୁ ଗ୍ରହଣ
ଗନ୍ଧାୟୂ ଯଥା ନ କରେ
ଧରଣୀ ପରିହ୍ମ- ଅଗ୍ରବ ବର୍ତ୍ତିଙ୍କୁ
ଦେଖାଗଲେ ସେ ପ୍ରକାରେ" ।
ଉଦାର-ଚରିତ- ବାନ ନଳ ଶ୍ରେଣୀ
ଭ୍ରାତୃ-ଦ୍ୱେଷେ ନିର୍ବାସିତ
ଥିଲେ ଯେଣୁ ହେଲେ ସ୍ୱପୁର ଅଗତ
ଜନେ ସମ୍ମାନେ ନିଯୁକ୍ତ ।
ଇକ୍ଷୁ ରସ ଛାଡ଼ି ୨ପିଚୁମର୍ଦ୍ଦେ କଡ଼ି
ରହିବ କେ ନରାଧମ
ସଦାଜ୍ଞାନ ଯାର ହୃଦେ କରେ ଘର
ସୁଜ୍ଞାନେ ଦିଏ ସମ୍ମାନ ।
ରାଜାଜ୍ଞା ଲଙ୍ଘନ କଲେ ପୁରଜନେ
ରହିଲେ ସେ ନଳ-ପାଶେ
ମିଳିତେ ସରବେ ହେଲେ ପୁରଦ୍ୱାରେ
ତହୁଁ ଫେରିଲେ ସ୍ୱ-ବାସେ ।
ନଳଙ୍କ ୩ସ୍ୱାଗତ ହେଲା ପ୍ରକାଶିତ
ପୁଷ୍କର ରାଜା ନିକଟେ
କ୍ରୂର ଦୁରାଗ୍ରହ ନ ନେଲା ଅଦର
ପଡିଣ ସଦା ସଙ୍କଟେ ।
ବଳେ ରାଜ୍ୟନେବା ଉଦ୍ଦେଶ୍ୟେ ବା ଅସି
ମିଳିଲେ ନିଷଧ ପୁରେ

---

୧ ଶିଥିଳ, ୨ ଲିମ୍ବରେ, ୩ ଶୁଭାଗମନ

ବିତାଡ଼ିତ ଯୋଗ୍ୟ       ଅଃନ୍ତ୍ର ତ ନଳ
ନ ଭେଟିଲେ ଅହଂକାରେ ।
କୋପାନଳେ ନଳ       ହୋଇ ପ୍ରଜ୍ୱଳିତ
ଚଳିଲେ ରଜା ପୁରତେ୧
କହିଲେ ନରେଶେ       କ୍ରୀଡ଼ନ ସଙ୍କାଶେ
ପ୍ରବେଶ ହେଲି ମୁଁ ଏଥେ ।
ରହିଲେ ପୃଷ୍ଟର       ବଧିର ପ୍ରକାର
ନ ଦେଇ କିଛି ଉତ୍ତର
ପକ୍ୱାମ୍ରାସ୍ୱାଦନେ       ରତ ବାନର କି
ହେଲେ ଗ୍ଲଚ୍ଛେ ତା ଅଧାର ।
ସୁମିଷ୍ଟ ଅହ୍ୱାନ       ଫଳ ଉତ୍ପାଦନ
ନ କଲରୁ ନଳ-କ୍ରୋଧ
୨ଉଦ୍ରେକ ହୋଇଣ       ତାହାଙ୍କ ଅସ୍ଥିରେ
ରଖିବା କଠିନ ସଧ ।
“ଲୋଭୀ ଜନ ଧନେ       କ୍ରୋଧୀ ଜନ ଦୈନ୍ୟେ
ମୂଢ଼କୁ ତା’ ସ୍ୱତକମେ
ଅପୂତ୍ କରିବା       ନୀତ ଅନୁଶ୍ରୁତ
କହନେଲେ ସେ ମରମେ” ।
ଶାଣିତ ୩କୃପାଣ       ସ୍ୱକରେ ଧରିଣ
କହିଲେ ନ କଲେ ଖେଳା
ଶସ୍ତ୍ରେ ତୁମ୍ଭ ଶିର       କାଟିବି ନିଜର
ତୁଟାଇବି ଇଚ୍ଛା-ଲୀଳା ।

---

୧ ଅଗ୍ରତେ, ୨ ଉତ୍ତେଜନ, ୩ ଖଣ୍ଡା

ରାଜା ସଭାତଳେ କହିଲେ ସଧୀରେ
କି [1]ହୁଡ଼ କହ ତ ମତେ
ଯା'ଙ୍କୁ ସକଳ ସମ୍ପଦ ତ ପୂର୍ବେ
ଏବେ କିସ ଅଛି ହାତେ ।
ନୈଷଧ-ଗଗନ- ଚନ୍ଦ୍ର ଦମୟନ୍ତୀ
ତାଙ୍କ ସଙ୍ଗେ ଭୂମି ରାଜ୍ୟ
ହୁଡ଼ ହେଲ ବୋଲି କହୁନେଇ ନଳ
ଡାକିଲେ ହେ ହୁଅ ସଜ ।
ନାମ ଉଚ୍ଚାରଣେ ହେଲେ ଉଚ୍ଚାଟନ-
ବଳେଶୟୁ ହୃଦବଳେ
ପୁଷ୍କରଙ୍କ ପଣି ଜ୍ଞାନ ଦେଲ ନାଶି
ରହିଲେ ତେଣୁ ବାକଳେ ।
ବୋଲନ୍ତି ନିଷ୍ଟପୁ ଖେଳେ ଅପଜୟୁ
ତେଣୁ ଦମୟନ୍ତୀ ମୋର
ହୋଇ ଅର୍ଦ୍ଧାଙ୍ଗିନୀ ହରାଇ ଅନଙ୍ଗ
ମତେ ତୋଷିବେ ନିକର ।
ସୁର-ମୁଚରେ ଦେବ- କନ୍ୟା ଅଗଣନା
ଗନ୍ଧର୍ବ, ଯକ୍ଷ ରମଣୀ
ଛାଡ଼ିଲେ ମଘବା ହେତୁ ଜ୍ଞାନ ଗର୍ବେ
ଆଶା କଲେ ତାଙ୍କ ପାଣି ।
ବରୁଣ, କୁବେର ପ୍ରେତପତିଙ୍କର
ଯାରେ ଥିଲ ଅଭିରୁଚି

[1] ପଣ

ସେହୁ ଦମୟନ୍ତୀ ପ୍ରେମେ ନତ ନତ
ସାଧିବେ ମୋ ମନୀପ୍ସିତ ।
ମନାକାଶେ ସେହୁ ନିର୍ମାଣି ୧ସୌଧ
ହାବନେଇ ବୁଦ୍ଧିଜ୍ଞାନ
କ୍ରୀଡ଼ନେ ସ୍ୱୀକୃତ କଲେ ନରପତ
ଦୂର୍ଗା ଶଶ-ବିଷାଣ୨ ।
୩ଆକାଶ-କୁସୁମ ମାତ୍ର ମନ-ଭ୍ରମ
ସେ ଭାବ ନଧର ମନେ
ପୂର୍ବଖେଳ ବେଳେ ନିଷଧ ଲଭିଲେ
ଅଣା କଲେ ସତୀ-ଧନେ ।
ଅକ୍ଷ-କ୍ରୀଡ଼ା ଜ୍ଞାନ ପ୍ରବୀଣ ଯେ ନଳ
ଋତୁପର୍ଣ୍ଣ ପ୍ରସାଦତଃ
ନ ଜାଣି ପୁଷ୍କର ମାନସ ଅନ୍ତରେ
ହେଲେ ଦ୍ୟୂତକ୍ରୀଡ଼ାସକ୍ତ ।
ଯେହେତୁ ଉଭୟ ହୁଡ଼ ଯେ ନିଶ୍ଚୟ
ହୋଇଥିଲା ତ ପ୍ରଥମେ
ଦାନ ପଡ଼ି ନଳେ ଭଲ୍ଲ ସମ୍ମାନିତ
ବସିଲେ ସେ ରାଜାସନେ ।
ବିରସ ବଦନେ ରହିଲେ ପୁଷ୍କର
ଚଳି ନେଇ ନିଜ ସ୍ଥାନ
ପୌରୁଷ, ବଡ଼ିମା ତାହାଙ୍କ ବରଜ
ନଳେ ରହିଲା ସମ୍ମାନ ।

---

୧ ଅଟ୍ଟାଳିକା, ୨ ଶଶକଶୃଙ୍ଗ ପ୍ରାୟ ମିଥ୍ୟା, ୩ ମିଥ୍ୟାବିଷୟ

"ଭାଗ୍ୟଚକ୍ର ଗତି ନ ଜାଣି ମାନବ
କରଇ ବୃଥାଭିମାନ
କାଳେ ଦୁଃଖୀ ହୃଦେ ବୁଦ୍ଧି ସେ ବିଷାଦେ
ରହଇ ଧାରଣ ଜ୍ଞାନ"।
ବିଗତ ଚିନ୍ତଣ ସଂକ୍ରନ ଅଗତେ
ହୁଏ ୧ପ୍ରତ୍ୟୁତ୍ପନ୍ନ ମନା
୨ଯଦ୍‌ଭବିଷ୍ୟଗତି ଧରି ମୂଢ଼ ମତି
ରହେ ପୂରିତ କାମନା।
"ଯେ ଦିଏ ଅପରେ ବିବିଧ ଯାତନା
ଦିନେ ତାର କ୍ଲେଶ ଭୋଗ"
ସେ ନୀତି ପୁଷ୍କର ମନାସନେ ଧର
କଲ ବହୁ ଅନୁସର।
ଗଲ ବଡ଼ପଣ ଶାସକ ଗୁମାନ
ରହିଲେ ଅରକ୍ଷ ପ୍ରାଣୀ
ଯା' ଅଦ୍ଭୁତ ଚିନ୍ତ ସେ ହେଲେ ନୃପତି
ମାଗି ତାଙ୍କ କ୍ଷମାଶ୍ରେଣୀ।

## ସପ୍ତଦଶ ସର୍ଗ

ଭକ୍ତି ଭରେ ନଳେ ସେ ପ୍ରଣାମ କଲେ
ଦନ୍ତେ ଧରିଣ ତରଣ
ଦେଲି ବହୁକ୍ଲେଶ ଅହେ ନରେଶ
କ୍ଷମା କର ହୀନ-କର୍ମ।

---

୧ କାର୍ଯ୍ୟ କାଳୋଚିତ ବୁଦ୍ଧି, ୨ ଭାବୀ ଘଟନାପେକ୍ଷା

ଯା' ହେଲା ଘଟିତ ତା ମୋ'ରି ଅଜ୍ଞାତ
ଅଗ୍ରଜଙ୍କ ମୋ ଅନାଦର
ବହିବା କାରଣୁଁ ସନ୍ତପ୍ତ ହୃଦୟେ
ଭାବେ ମୁଁ ନିଶି ବାସର ।
ହାନ ବୀରବରଂ କ୍ଷମା ଗୁଣାଧାର
ଅତ ଯେହେତୁ ରଞ୍ଜନ
ମୋ ସରବ ଦୋଷ ହେବ ତ ମାର୍ଜିତ
ଅଶାପୂର୍ଣ୍ଣ ବହେ ମନ ।
କ୍ଷମା-ଗୁଣୀ ହୃଦ କ୍ଷମାକୁ ଆଦରେ
ହେଲେହେଁ ବେ ୧ଅଭଧାୟୀ
ଅପକାର ୨ଗୁଲ ମେ ଯାଇ ପାସୋର
ଦୋଷୀ କ୍ଷମା କରେ ସେହୁ ।
ଏଷ୍ଟର କାପଟ୍ୟେ ନଳରଜା . ଦୁଟଣ୍ଠ
ରହିଥିଲେହେଁ ସେକ୍ଷଣି
୩ନବନୀତ ହୃଦ ଭଲ୍ଲ ତରଳିତ
ତାଙ୍କ ଅନୁତାପ ବାଣୀ ।
କହିଲେ ମାତର ବନ୍ଧୁ, ଦୁବରୁଷୀ
ଅଶା ଭଲ୍ଲ ରାଣୀପ୍ରେମ
ତୋ ପ୍ରାଣ ବନାଶେ କୋହି ପାଏ ଲେଶ
ବରଂ ଧର୍ମ ହେବ ମାନ ।
ସତୀ ଦମୟନ୍ତୀ ପାଦାଗ୍ରତେ ପଡ଼ି
କ୍ଷମାଭିକ୍ଷା କର ଏବେ

---

୧ ବନାଶକାରୀ, ୨ ସମୂହ, ୩ ନବନୀ

ସେ ଦୋଷ ମାର୍ଜନା କଲେ ମୁହିଁ ସିନା
ଶାନ୍ତିଦେବ ଯଥା [illegible]ବେ ।
ଉପଦେଶ ପାଳି ନେଲେ ଯଥା ଭଲି
ନଳ କହିଲେ ସୁହୃଦେ
ତୋର ଭୋଗ୍ୟ ରାଜ୍ୟ ତୁ ଭୋଗି ସହଜେ
କାଳ କାଟିନିଅ ମୁଦେ ।
ପ୍ରଜା ପ୍ରପୀଡ଼ନ ଅସଦାଚରଣ
ନିରତେ କର ବର୍ଜ୍ଜନ
ପର ସତୀ-ମାନ ରକ୍ଷଣେ ତୁ ମନ
ଦେଉଥାଅ ଅନୁକ୍ଷଣେ ।
ଦୟା-ଶାନ୍ତି ପୂର୍ଣ୍ଣ ରହୁ ତୋ ଶାସନ
ଅରକ୍ଷେ ଯୋଗାଅ ବୃତ୍ତି
ସୁଯୋଗ୍ୟ ୧ସଚିବେ ରଖି ମିତ୍ର ଭାବେ
ନ୍ୟାୟେ ରହିଥାଅ ସ୍ଥିତି ।
ଦମୟନ୍ତୀ ପାଦେ ପଡ଼ି ସେ ବିଷାଦେ
କହିଲେ ମୋ ଦୋଷ କ୍ଷମା
କର ବୋଲି ଏବେ ମାଗଇ ସରାଗେ
ତୁମ୍ଭେ ତ ମୋ ମାତା ସମା ।
ମଳ, ମୂତ୍ର ତ୍ୟାଗ କଲେ କେ ଭୂମିରେ
ବସୁମତୀ କୋଧମନା
ହୁଏ ବୋଲି କେବେ ଥରେ କେ ଭାବଇ
ତଥା କରନ୍ତେ ଭାବନା ।

---

୧ ମନ୍ତ୍ରୀମାନଙ୍କୁ

କାନ୍ଦିଲେ ଜନନୀ ସନ୍ତାନର ହାନି
ମାତାଙ୍କୁ ନଲଗେ ତାହା
କାନ୍ଦା ଫଳ ଭୋଗେ କାନ୍ଦୁଙ୍କ କେବଳ
ବାଢୁଥାଏ ନିଜ ସ୍ପୃହା ।
ଅନ୍ୟ କଷ୍ଟେ ପଡ଼ି ଚାହିବା ମାନବେ
ଯୋଗାଉଥିବୁ ଆହାର
ତୋ ଦାନେ ପ୍ରଚୁର ସୁଖ୍ୟାତି ପ୍ରଚୁର
ହୋଇବ ତ ବିଶ୍ୱେ ତୋର ।
"ପରହିତେ ରତ ତୁ ଥିଲେ ନିଯୁକ୍ତ
ଅଦୃଶ୍ୟ-ଶକ୍ତି ତୋ ହିତ
ଗୋପନେ ସାଧିବ ମାନ ଦୃଢ଼ ଭାବେ
ସେହି ସେ ସଜ୍ଜନ ମିତ" ।
"ଅବର କହଇ ତୁ କଷ୍ଟଧସାଇଁ
ଅନୁଗତେ ରହୁ ସଦା
୧ଅପ୍ତ ଭାବେ ନର- ପତିଙ୍କ ଆଦର
ବଢ଼ାଉଁଥିବୁ ସର୍ବଦା ।
ମିତ୍ର ରାଜ୍ୟ ତୋର ହେଲେ ଯେ ନିକର
ଶତ୍ରୁ ଭୀତି ଯିବ ଦୂରେ
"ଯଥା ସମ୍ମିଳିତ ତୃଣେ ରଜ୍ଜୁ ଥିଲେ
ବନ୍ଧାଯିବ ଗଜ-ବରେ" ।
ଉପଦେଶାବଳୀ ରତ୍ନହାର ଭଳି
ମଣ୍ଡିତେ ରହୁ ପୃଷ୍ଠର

୧ ଆତ୍ମୀୟ

ବନ୍ଦିଣ ଶ୍ରୀପଦେ ପ୍ରଣାମି ସେ ମୁଦେ
ଚଳିଗଲେ ନିଜ ପୁର ।
ଲଙ୍କା ଦହି ନେଇ ଲଙ୍କା ପରେ ଥୋଇ
ପ୍ରହାରେ ଅଭ୍ର ଯେମନ୍ତ
ତଥା ସେ ଦୁର୍ବୃତ୍ତ ଶତ୍ରୁ ନୃତ୍ତ ତତ
ବଦଳି ଗଲେ ତୁରନ୍ତ ।
ଶାସକ-ଧରମ- ସୁବୀଜ ବପନ
ହେଲା ଯେଣୁ ତାଙ୍କ ହୃଦେ
ଅଭ୍ୟାସ ସଲିଳ ଲଭି ବାର ବାର
ପୁଷ୍ପରେ ରଞ୍ଜିଲା ମୋଦେ ।
ଦଣ୍ଡଯୋଗ୍ୟ ସେହୁ ଅଦଣ୍ଡ୍ୟ ଯେ ହୋଇ
ମଣିଲେ ନିଜକୁ ସାଧୁ
ଭୂରି ଭୂରି ପର- ଶଂସା ଦୂରଃସର
ନଳେ ଦେଲେ ସେହୁ ଦ୍ରୋହୀ ।



## ଅଷ୍ଟାଦଶ ସର୍ଗ

ନଳ ମହାଭାଗ ପଦପଦବର୍ଗ
ଡ଼କାଇ ନେଲେ ବହନେ
କହିଲେ ଦୁର୍ଦ୍ଦଶା ବଶେ ସେ ବଦେଶେ
ଥିଲେ ମିଳିଲେ ସ୍ୱଜନେ ।
ଦୁର୍ଗତ କାହାଣୀ ନ ନେଲେ ବ୍ୟାଖ୍ୟାନ
ଶୁଣାଇବା ତା ଅଶେଷ

ଦୁଃଖ ଅନୁଭବ   କରିବେ ସରବେ
ସେ ଭାବ ଯେଣୁ ହୃଦୟ ।
ବୋଇଲେ ପୁଷ୍କର   ବନ୍ଧୁ ଅଭ୍ୟାଗତ
ଭରିନେଲେ ସ୍ୱଳ୍ପ କାଳେ
ପ୍ରଜା ଦୁଃଖେ ଦୁଃଖୀ   ନଳେ ନେଇ ଲେଖି
ତାଙ୍କୁ ଦାୟୀ କର ବେଳେ ।

ନଥାଇ କାରଣ   ରାଜା, ପ୍ରଜାଗଣ
ଭୋଗିଲେ କ୍ଲେଶ ଅପାର
କେଉଁ ଭାବେ ବନ୍ଧୁ   ଘଟାଇଲେ ସବୁ
ସେ ନୀତ ତାଙ୍କୁ ଗୋଚର ।

ଯେ ଯା' କାର୍ଯ୍ୟାବଳୀ   ଗତ ଯେ ନ ଭାଳି
ଭରନ୍ତେ ବନ୍ଧୁ ସରାଗ
ସୃଷ୍ଟି ବିନା କାମ   ହେଲେ ସମାପନ
ନୋହିବ କେହୁ ବିରାଗ ।

ରାଜା ମାତ୍ର ଏକ   ସୁଦକ୍ଷ ଚାଳକ
ବଳେ ଚଳାନ୍ତି ମେଦିନୀ
ଶାସନ ବିଧାନ   ନିୟମ ପାଳନ
କରମୀ ନିଅନ୍ତି ମାନି ।

କୃଷକ ଆଦେଶେ   ଯଥା କୃଷି-ପଶୁ
କରନ୍ତି ଭୂମି କର୍ଷଣ
ତଥା ରାଜାଦେଶେ   ଯେ ପରିଚାରକେ
ଚଳୁଥାନ୍ତି ଅନୁକ୍ଷଣ ।

ସଭିଙ୍କ ରକ୍ଷଣା-　ବେକ୍ଷଣେ ନୃପତି
ଦେଖିଥାନ୍ତି ନିତି ମତି
ସ୍ୱ କର୍ତ୍ତବ୍ୟ କରି　ସର୍ବ କର୍ମଗୃହୀ
ଶାସନ ତନ୍ତ୍ର ଚଳାନ୍ତି ।
ବାର୍ଷ୍ଣେୟ ଡ଼ାକି　କହିଲେ ତା ପରେ
ରଥେ ଚଳି ବିଦରଭେ
ଅମ୍ଭ ସୁତା, ସୁତ　ଅଣି ହେ ସଙ୍ଗତେ
କହ ରାଜନେ ସରବେ ।
ଅବର କହିବ　କୋଟି ନମସ୍କାର
ଅମ୍ଭର ସେହୁ ଘେନିବେ
ତାହାଙ୍କ ଅଶିଷେ　ଶୁଭେ ଅମ୍ଭେ·ଦେଶେ
ରହିବୁ ପୂର୍ଣ୍ଣ ବିଭବେ ।
ରାଜାଜ୍ଞା-ଉଷ୍ଣୀଷ୧　ମଣ୍ଡିତେ ବାର୍ଷ୍ଣେୟ
ଚଳିଲେ ବିଦର୍ଭ ପୁରେ
ନଳଙ୍କ ବିଭୂତି　ପୁଷ୍କର ଦୁର୍ଗତି
ଜଣାଇଲେ ନରବରେ ।
କିଛି ଦିନ ପରେ　କୁମାରୀ, କୁମାର
ନେଲେ ସେ ନିଷଧପୁରେ
ବିନୀତ ପ୍ରଣାମ　କରି ନରରାଣେ
ଗଲେ ସେ ନିଜ ଅଗାରେ ।
ନଳ, ଦମୟନ୍ତୀ　ଦଶା ବିପର୍ଯ୍ୟୟ
ଭୁଲିଗଲେ ମୁଖେ ମୁଖେ

---

୧ ପଗଡ଼ି

ଯେ ଥିଲେ ବ୍ୟଥିତ ସେ ହେଲେ ମୁଦିତ
ବାଡ଼ିା ଗଲା ପୁର ଲୋକେ ।
ମଙ୍ଗଳବାଦ୍ୟ ଶୁଣି ହୋଇଲେ ତ୍ୱରିତ
ଅବର କଳି, ଦ୍ୱାପର
ଦୁର୍ଦ୍ଦଶାକୁ ଦାୟୀ ଯେଣୁ ସେ ଉଭୟ
ଲଜ୍ଜିତ ହେଲେ ଅପାର ।
ବୀରସେନ ଯାଗେ ପାଇ ସ୍ୱର୍ଗଭୋଗ
ଦେବ କେତେ ଥିଲେ ରଣୀ
ତାଙ୍କ କୁମାରଙ୍କ ଶୁଭ ସମାଚାର
ଶ୍ରଦ୍ଧାଭରେ ନେଲେ ଶୁଣି ।
କଳି ଓ ଦ୍ୱାପର ଅନୁତାପ ସରେ
ବୁଡ଼ି ରହୁ ଅନୁକ୍ଷଣି
ରାଜା-ପୁରଗତ ହେଲେ ସେ ତୁରିତ
ସଙ୍ଗେ ଥୋକେ ଦେବ-ଗଣ ।
ଯେହୁ ଅତତାୟୀ ସମ୍ମୁଖେ ସେ ହୋଇ
କରିଲେ କ୍ଷମା ମାଗୁଣି
ନିଶ୍ଚିତ ତା ଲଭି ହେବ ବୋଲି ଭାବି
ଅଗତ ହେଲେ ଧରଣୀ ।
ମିଳିତେ ସଭବେ ପ୍ରବେଶି ପ୍ରାସାଦେ
ଭେଟିଲେ ନଳ ନରେଶ
ଯଥାଯୋଗ୍ୟ ମାନ୍ୟ କରି ସେ ଗ୍ରହଣ
ଦେଲେ ଅଶିଷ ଅଶେଷ ।

ନିଜ ଦୋଷ ମାନି ନେଲେ ଯୁଗ ବେନି
ଗୃହୁଁ ବାକ୍ୟାବଳୀ ବହି
କହିଲେ ଯା' କଲୁ ଅମ୍ଭର ତା ନୁହେ
ବିଧାନଲେ ବଞ୍ଚ ବହି ।

ସୁଖ ସ୍ୱଚ୍ଛନ୍ଦରେ ଥିଲ ଯେ ଦମ୍ପତି
ରସା କଷ୍ଟେ ଅଛ ହୋଇ
ବିବିଧ ଯାତନା ହୋଇଲା ଘଟଣା
ରସାୟନ ହେଲେ ସେହି ।

ଦୃଢ଼, ସତ୍ୟବ୍ରତ ତବେ ଅଚରତ
ଅବିଚଳିତ ମାନସ
ତୁମ୍ଭର କେବଳ ଜାଣୁ ମହୀପାଳ
ସୁଚରିତ୍ରା ନିରତେ ରସ ।

ଅନ୍ୟ ଅଭିମାନ ବର୍ଜିତେ ଅପଣ
ନିଜକୁ ତୃଣ ସମାନ
ଜ୍ଞାନ କରୁଥାଅ ହେଲେ ଶୁରବର
ରଜାଧିରଜ ନିଦାନ ।

ପରଜାଙ୍କୁ ପାଳ ଅମ୍ଭଜ ସମାନ
ପରୋପକାରେ ନିରତେ
କାଳ କାଟି ନେଇ ଦ୍ୱେଷ ମନୁ ଫେଇ
ଚଳୁଥାଅ ସତପଥେ ।

ରାଜ-କୋଷ ଧନ ଜନଙ୍କ ପୋଷଣେ
କରୁଥାଅ ନିଯୋଜିତ

ଭରଣ ପୋଷଣ ଉପାୟ ବହ୍ନିନ
ଜୀବ ନରହେ ଦେଖେ ତ ।
ଯୋଗୀ ମନୋବୃତ୍ତି ବ୍ରହ୍ମଠାରେ ମାତ
ରହିଥାଏ ଜ୍ଞାନି-ବର ·
ଶର୍କରରେ ଯଥା ମିଷ୍ଟରସ ରହେ
ବାଭଜ୍ୟ ନୋହୁ କାକର ।
ଦମୟନ୍ତୀ ରାଣୀ ସୁତ-ଗୁଣ ଖଣି
ପରାକାଷ୍ଠା ସତୀ ଭୂଷା
ଭୂଷିତେ ରହନ୍ତ ନାହିଁ କିଛି ଭ୍ରାନ୍ତ
ଶତ ସମ ସେହୁ ଯୋଷା ।
ବିଚକ୍ଷଣ ବୁଦ୍ଧି ପ୍ରସିଦ୍ଧ ମନ୍ତ୍ରଣା
ବଳେ ତାଙ୍କ କେ ନ ବଳେ
ଭୂଦେବୀ ଗର୍ବୀତ ହେବାର ଉଚିତ
ଧନଣ ତାହାଙ୍କ କୋଳେ ।
ରସା ମାୟା-ଡୋର ଦମ୍ପତ ବାହାରେ
ଖେଳ ରହିଥାଏ ପିନା
ଶନ୍ଦୁ ହେଲେ ହେଲେ ପାଦାଗ୍ରତେ ପଡ଼
ଦାଏ ନଷ୍ଟେ ସମ୍ଭାବନା ।
ଅମ୍ଭର୍ ଅଶିଷ ବଣେ ଯେ ଦାମ୍ପତ
ଦୀର୍ଘାୟୁ ହୋଇ ବହର
ସତ୍ୟ ନାରାୟଣ ନୟନ-ଅୟନେ
ରଖି ଅହରହ ହର ।

ରଚୟିତା ଅଭି- ମନ୍ୟୁ ମନକ୍ଷୋଭେ
ଭାସି ରହେ ଭବ-ସରେ
ଭବୀ ହିତାହିତ ନ ଚିନ୍ତି ମାନସେ
ନିରହଙ୍କାରେ ବିହରେ ।



ଦେବକୀ-ନନ୍ଦନ ଦେବ କଂସ ଘାନ
ଦେବୋତ୍ତର ସର୍ବ କାନା
ଏ ବିଶ୍ୱ ଚାଳକ ପାଳକ ମାଳିକ
ଘେନ ମୋ ଦୈନ୍ୟ ବନ୍ଦନା ।



## ଉପସଂହାର

ଶୈବଳିନୀ ଶୈବଳେ ରହିବା ସମୁଚିତ
ବାରି-ଗୁଣ ତାର ବଳେ ନୁହେ ବିକଳିତ
ଦୋଷ ଛାଡ଼ି ଗୁଣ ଗୁଣି ନେବେ ଗୁଣୀ-ଜନ
ମଧୁକର ମଧୁପାନ-ଘୁମେ ଯଥା ମନ ।




ବ୍ରହ୍ମପୁର ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସରେ ଶ୍ରୀ ହାଡ଼ୁ ସତ୍ପଥୀଙ୍କ
ଦ୍ୱାରା ମୁଦ୍ରିତ । ୧୯୪୧ ।

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ ଶବ୍ଦ | ଶୁଦ୍ଧ ଶବ୍ଦ |
|---|---|---|---|
| ୯ | ଶେଷଧାଡ଼ି | ମତ | ମତୀ |
| ୧୨ | ୯ | ନିକ୍ଷେପିଣ | ନିକ୍ଷେପଣ |
| ୨୭ | ୧୭ | ଗମ୍ଭିର | ଗମ୍ଭୀର |
| ୨୯ | ୨ | ଦୂର୍ମତ | ଦୂର୍ମ୍ମତି |
| ୩୦ | ୧୧ | ସର୍ବଙ୍ଗେ | ସର୍ବାଙ୍ଗେ |
| ୩୫ | ଟିପ୍‌ପଣୀ | ସାଙ୍ଗରେ | ସାଙ୍ଗରରେ |
| \ | ୩ | କୋମଳ (ଦ୍ୱିତୀୟ) | କମଳ |
| ୫୧ | ୧୦ | ଚଷ୍ଟେ | ନଷ୍ଟେ |
| ୫୨ | ଟିପ୍‌ପଣୀ | ବୃନ୍ଦାରକଗଣେ | ଦେବେ |
| ୬୧ | ଶେଷଧାଡ଼ି | ସ୍ଥିରେ | ଥିବେ |
| ୬୫ | ୧୩ | ଡରେ | ପରେ |
| ୭୧ | ୧ | ଚନ୍ଦି | ଚନ୍ଦ |
| ୭୨ | ୨୦ | ଅବଷଣେ | ଅନ୍ୱେଷଣେ |
| ୭୫ | ୩ | ଦେଶ | ଦେଶୀ |
| ୮୦ | ୧୯ | କଣ୍ଟେଶର | କର୍ଣ୍ଣେଶର |
| ୮୧ | ଶେଷଧାଡ଼ି | ଯଥେଚ୍ଛ | ଯଥେଚ୍ଛା |
| ୮୪ | ୫ | ବନ୍ଧୁକ | ବନ୍ଧୁକ |
| ୯୬ | ଶେଷଧାଡ଼ି | କଲେ | ନେଲେ |
| ୧୧୮ | ୧୬ | ଦ୍ୱର | ଦ୍ୱାର |
| ୧୨୭ | ୨ | ସ୍ୱଚ୍ଛଳ . | ଅଚଳ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ ଦେ | ଶୁଦ୍ଧ ଦେ |
|---|---|---|---|
| ୧୩୧ | ଟିପ୍ପଣୀ | ୧ ମେଘ | ୧ ବର୍ଷା |
| ୧୪୧ | ୨୧ | ସନ୍ତାନ | ସନ୍ତାନେ |
| ୧୪୯ | ଶେଷଧାଡ଼ି | ବୁଦ୍ଧିମନ୍ତ | ବୁଦ୍ଧିମନ୍ତା |
| ୧୫୨ | ୭ | ବାସ୍ତେସ୍ତୁ | ବାର୍ସ୍ତେସ୍ତୁ |
| ୧୬୨ | ଟିପ୍ପଣୀ | ଗର୍ବ ପ୍ରକାଶ | ଅଦର |
| ୧୮୩ | ୧୪ | ଗୃଲୁଥାଅ | ଗୃହ୍ଣୁଥାଅ |
| ୧୯୦ | ୭ | ସୁତ | ପୁତ୍ର |



# ପ୍ରଣେତାଙ୍କ ବିରଚିତ ପୁସ୍ତକର ନାମ





